# କବି ଅନନ୍ତ ପଟ୍ଟନାୟକ

ପ୍ରହରାଜ ସତ୍ୟନାରାୟଣ ନନ୍ଦ



ଓଡ଼ିଶା ସାହିତ୍ୟ ଏକାଡେମୀ
ସଂସ୍କୃତି ଭବନ, ଭୁବନେଶ୍ୱର - ୭୫୧୦୧୪

# କବି ଅନନ୍ତ ପଟ୍ଟନାୟକ

ପ୍ରହରାଜ ସତ୍ୟନାରାୟଣ ନନ୍ଦ

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ସଂସ୍କୃତି ଭବନ, ଭୁବନେଶ୍ୱର - ୭୫୧୦୧୪

ପ୍ରଥମ ପ୍ରକାଶ : ୨୦୦୩

ଅକ୍ଷର ବିନ୍ୟାସ ଓ ମୁଦ୍ରଣ :
ସମର୍ ଗ୍ରାଫିକ୍ସ, ସହଦେବଖୁଣ୍ଟା, ବାଲେଶ୍ୱର

ମୂଲ୍ୟ : ୩୫ ଟଙ୍କା

**KABI ANANTA PATTANAYAK**
(A Monograph)

**By Praharaj Satyanarayan Nanda**

Published by :
**Orissa Sahitya Akademi,**
Sanskruti Bhavan, Bhubaneswar - 751014

First Edition : 2003

Data process & Printed at :
**SAMAR GRAPHICS**
Sahadevkhunta, Balasore - 756001

Price : Rs. 35/-

I.S.B.N. 81- 7586 - 089 - 8

# ଅଗ୍ରଲେଖ

କବି ଅନନ୍ତ ପଟ୍ଟନାୟକ (ତା ୧୧/୬/୧୯୧୨–୨୪/୬/୧୯୮୭) ଓଡ଼ିଆ ସାହିତ୍ୟରେ ଅତ୍ୟନ୍ତ ସ୍ମରଣୀୟ ନାମଟିଏ । ତେବେ ସେ କେବଳ ସାର୍ଥକ କବିଟିଏ ନଥିଲେ । ସେ ଥିଲେ ଏକାଧାରରେ ଜଣେ ବିପ୍ଳବୀ କବି, ସାମ୍ବାଦିକ, ସ୍ୱାଧୀନତା ସଂଗ୍ରାମୀ, ଶକ୍ତିଶାଳୀ ସଂଗଠକ, ଗାଳ୍ପିକ, ଅନୁବାଦକ, ଶିଶୁ ସାହିତ୍ୟର ଲେଖକ, ନାଟ୍ୟକାର ଏବଂ ସର୍ବୋପରି ପ୍ରଗତିଶୀଳ ସାମ୍ୟବାଦୀ ଚିନ୍ତାଧାରାର ଅନ୍ୟତମ ପ୍ରବକ୍ତା । ସାରସ୍ୱତ ସାଧନା କ୍ଷେତ୍ରରେ ତାଙ୍କର ନିରବଚ୍ଛିନ୍ନ ସାଧନା ଅତ୍ୟନ୍ତ ଅଭିନନ୍ଦନୀୟ । ଗାନ୍ଧୀବାଦରୁ ସାମ୍ୟବାଦ ଏବଂ ପରିଶେଷରେ ମାନବବାଦୀ ଅନୁଚିନ୍ତା ଦ୍ୱାରା ସେ ପ୍ରଭାବିତ ହୋଇଥିଲେ । ତାଙ୍କ ବିଷୟରେ ବିଶିଷ୍ଟ ଓଡ଼ିଆ ଔପନ୍ୟାସିକ ଗୋପୀନାଥ ମହାନ୍ତି ଥରେ କହିଥିଲେ - କବି ଅନନ୍ତ ଲେଖାରେ ''ଭାଷାର ତୁଡ଼ୁମା ଝରେ'' । କବିତା ଲେଖାହୁଏ ଆପଣା ଜୀବନ ଭିତରୁ, ହୃଦୟ ଭିତରୁ ।

ତାଙ୍କର ଆଦର୍ଶ ଥିଲା ଗାନ୍ଧିଜୀଙ୍କର ଜାତୀୟତା ଆନ୍ଦୋଳନ ଏବଂ ସୋଭିଏତ୍ ଋଷର ସାମ୍ୟବାଦୀ ଆନ୍ଦୋଳନ । କିଶୋର ବୟସରେ ବାନରସେନା ଭାବରେ ଅସହଯୋଗ ଆନ୍ଦୋଳନରେ ଅଂଶଗ୍ରହଣ କରି ସେ ଜେଲ୍‌ବରଣ କରିଥିଲେ । ଓଡ଼ିଶାରେ ପ୍ରଥମ ଛାତ୍ରସଂଗଠନ, ଗଡ଼ଜାତ ଆନ୍ଦୋଳନ ଏବଂ ନବଯୁଗ ସାହିତ୍ୟ ଆନ୍ଦୋଳନରେ ତାଙ୍କର ଭୂମିକା ଥିଲା ଅବିସ୍ମରଣୀୟ । ଔପନିବେଶିକ ସରକାରଙ୍କର ଅତ୍ୟାଚାର ଓ ଅନୀତି ବିରୁଦ୍ଧରେ ବହୁ ବୈପ୍ଳବିକ କବିତା ରଚନା କରି ସେ ଚହଲ ପକାଇ ଦେଇଥିଲେ । ଏଥିପାଇଁ ଅତନୁ, ଅଣାକାର, ବୋଧିସତ୍ତ୍ୱ, କୁମାରୀ ଯଶୋଧାରା ପ୍ରଭୃତି ଛଦ୍ମନାମରେ ତାଙ୍କର ଜ୍ୱାଳାମୟୀ କବିତାଗୁଡ଼ିକ ପ୍ରକାଶିତ ହେଉଥିଲା ।

ଅନନ୍ତ ଥିଲେ ଜଣେ ସାର୍ଥକ ସାମ୍ବାଦିକ ଓ ସଂପାଦକ । 'ସତ୍ୟବାଦୀ' ପତ୍ରିକାର ନୂତନ ପ୍ରସ୍ଥ ଏବଂ 'ଶିଶୁଲେଖା' ପତ୍ରିକା ସଂପାଦନା କରି ସେ ଯଶସ୍ୱୀ ହୋଇଥିଲେ । 'ସମାଜ', 'କୃଷକ', 'ମୁକ୍ତିଯୁଦ୍ଧ' ପ୍ରଭୃତି ପତ୍ରିକାମାନଙ୍କରେ ତାଙ୍କର ସାମ୍ବାଦିକର ଭୂମିକା ଥିଲା ଅତ୍ୟନ୍ତ ଉଲ୍ଲେଖନୀୟ । କଂଗ୍ରେସ ଆନ୍ଦୋଳନ ଏବଂ ଗଡ଼ଜାତ ଆନ୍ଦୋଳନରେ ଅଂଶ ଗ୍ରହଣ କରି ସେ ବହୁବାର କାରାବରଣ କରିଥିଲେ ।

କେବଳ ସେତିକି ନୁହେଁ, ଏହି ବହୁମୁଖୀ ପ୍ରତିଭାଧର କବି 'ସପ୍ତଶଯ୍ୟା' ଚଳଚ୍ଚିତ୍ରର ସହନିର୍ଦ୍ଦେଶକ; କାହାଣୀ, ଚିତ୍ରନାଟ୍ୟ ଏବଂ ସଂଳାପର ଲେଖକ ଭାବରେ ମଧ୍ୟ ସୁପରିଚିତ । ସେ ଥିଲେ ଜଣେ ସାର୍ଥକ ଅନୁବାଦକ ମଧ୍ୟ । ସୋଭିଏତ୍ ଋଷିଆର ଜଗତ ବିଖ୍ୟାତ ଲେଖକ ଗର୍କିଙ୍କର 'ମଦର' ଉପନ୍ୟାସ ଅନୁବାଦର ଶୀର୍ଷକ ଥିଲା 'ମା' । ସେହିପରି ମିଖାଇଲ ଶୋଲଖଭଙ୍କ 'Fate of a man'ର ଅନୁବାଦ କରିଥିଲେ 'ଭାଗ୍ୟରୁ ଖିଏ' ନାମରେ । ମହାତ୍ମା ଗାନ୍ଧୀଙ୍କ ଆତ୍ମଜୀବନୀର ଦ୍ୱିତୀୟ ଭାଗକୁ ଅନୁବାଦ କରି ନାଁ ଦେଇଥିଲେ 'ଶିକ୍ଷାନବୀଶ' । ତାଙ୍କର ଅନ୍ୟ ଏକ ଅନୁବାଦ ପୁସ୍ତକ ହେଲା 'ଗୀତଟିଏ ରଚିତ ହେଲା କିପରି ?' ଏବଂ 'ସତ ହେଲା ମଣିଷର ସ୍ୱପ୍ନ' ।

ଓଡ଼ିଶାର ସର୍ବପ୍ରାଚୀନ ସାହିତ୍ୟ ଅନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ' କଟକର ସେ ଥିଲେ ସଭାପତି ୧୯୭୧-୭୪ ସାଲରେ । ୧୯୮୧ ସାଲରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଏହି ମହାନ କବିଙ୍କୁ ପୁରସ୍କାର ପ୍ରଦାନ କରିଥିଲେ । ସେହିପରି ୧୯୮୨ ମସିହାରେ ମର୍ଯ୍ୟାଦାଜନକ ସୋଭିଏତ୍ ଲ୍ୟାଣ୍ଡ ପୁରସ୍କାର ମଧ୍ୟ ସେ ପ୍ରାପ୍ତ ହୋଇଥିଲେ ।

*ରକ୍ତଶିଖା, ଶାନ୍ତିଶିଖା, ତର୍ପଣ କରେ ଆଜି, କିଞ୍ଚିତ୍, ଛାଇର ଛିଟା, ଅବାନ୍ତର* ପ୍ରଭୃତି ବହୁ ସ୍ମରଣୀୟ ଗ୍ରନ୍ଥର ଲେଖକ ବିପ୍ଳବୀ ଅନନ୍ତ ପଟ୍ଟନାୟକଙ୍କର ସାହିତ୍ୟିକ ଓ ସାଂସ୍କୃତିକ ନେତୃତ୍ୱ ଅବିସ୍ମରଣୀୟ । ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ପ୍ରକାଶିତ କବିଙ୍କର ଏହି 'ପରିଚିତି' ପାଠକୀୟ ଆଗ୍ରହ ଓ ଶ୍ରଦ୍ଧା ଆକର୍ଷଣ କରିବ ବୋଲି ଆଶା କରାଯାଏ ।

**ପଠାଣି ପଟ୍ଟନାୟକ**

ସଭାପତି

ଓଡ଼ିଶା ସାହିତ୍ୟ ଏକାଡେମୀ

# ଏକ ସମୀକ୍ଷାୟନ

ଆଧୁନିକ ସୁଖ୍ୟାତ 'କବି ଅନନ୍ତ ପଟ୍ଟନାୟକ' ଶୀର୍ଷକରେ ଆଲୋଚକ ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କର ପ୍ରସ୍ତୁତ ମନୋଗ୍ରାଫ୍‌ଟି ମନୋଯୋଗ ସହିତ ମୁଁ ଏକାଧିକ ବାର ପାଠ କରିଛି । ଏହା ସମାଲୋଚନା ପର୍ଯ୍ୟାୟର ନ ହୋଇ ବିଶଦ ଆଲୋଚନାରେ ସୀମିତ ରହିଥିବାରୁ ସମୀଚୀନ ଓ ସୁପାଠ୍ୟ ହୋଇଛି । ସେ ତାଙ୍କର ପ୍ରତିପାଦନୀୟ ବିମର୍ଷ ଓ ଆଭିମୁଖ୍ୟମାନ ଯଥାବିଧି ଉପସ୍ଥାପନ କରିଥିବାରୁ ପାଠକ ତାହା ନିଜ ବିଚାରଭଙ୍ଗୀରେ ହୃଦୟଙ୍ଗମ କରିପାରିବେ ବୋଲି ମୋର ବିଶ୍ୱାସ ।

ସାଧାରଣତଃ, ସମାଲୋଚନାରେ କେତୋଟି ଅବାଞ୍ଛିତ ବିଭାବ ଲକ୍ଷ୍ୟ କରିହୁଏ । ଏହା ହେଉଛି – କବିକୃତିର ବିଶ୍ଲେଷଣାତ୍ମକ ରୂପ, ତାହାର ପ୍ରୟୋଗାତ୍ମକ ଅବସ୍ଥା ଏବଂ ତହିଁରେ ସ୍ୱକୀୟ ବିବେଚନାର ପ୍ରାଧାନ୍ୟ । ଏଥିରେ ତନ୍ନିହିତ ଥିମ୍, ରସ ଏବଂ ଭାବର ଆବେଦନ ଦିଗ ଅପେକ୍ଷା ସମାଲୋଚକର ବହୁପାଠିତା, ପାଣ୍ଡିତ୍ୟ ପରାୟଣତା ଅଧିକ ପ୍ରକଟିତ ହୋଇଯାଏ, ଯାହା କ୍ଷେତ୍ରବିଶେଷରେ ମାତ୍ରାତିରିକ୍ତ ମଧ ହୋଇଯାଇପାରେ । ଏହା ଯୋଗେ ସମାଲୋଚକର ବ୍ୟକ୍ତିଗତ ଆଭିମୁଖ୍ୟର ଶିକାର ହୋଇଯିବାର ଆଶଙ୍କା ପାଠକ ପକ୍ଷରେ ରହେ । ଏଇ ଅବସ୍ଥାକୁ ଲେଖକ ହ୍ୱିଟ୍‌ନି ବାଲିଆଟ୍ କଠୋର ଭଙ୍ଗୀରେ କହିଛନ୍ତି, "A critic is a bunch of biases held loosely together by a sense of taste." ପୁନଶ୍ଚ, ଆଲୋଚ୍ୟ କବିକୃତିର ଏକାଧିକ ସମାଲୋଚକ ରହିପାରନ୍ତି । ସେମାନଙ୍କ ମଧରେ ତହିଁର ବୁଝାମଣା, ବିବେଚନା ତଥା ଆଭିମୁଖ୍ୟ ଭିନ୍ନ ଭିନ୍ନ ହେବା ସମ୍ଭବ; ଯେପରି– (ବୃକ୍ଷ, ସୌଧ, ମନ୍ଦିର, ଟ୍ରକ୍, ହରିଣ

ଆଦି) ଯେ କୌଣସି ଦୃଶ୍ୟବସ୍ତୁର ବିଭିନ୍ନ ପାର୍ଶ୍ୱ-ପରିପ୍ରେକ୍ଷୀରେ ଅଙ୍କିତ ଚିତ୍ରର ମୌଳିକ ସ୍ୱରୂପଟିକୁ ଚିହ୍ନି ପାରିବା ଦର୍ଶକଠାରେ ସହଜ ହୋଇ ନ ପାରେ । ଚିହ୍ନିବା ପାଇଁ ସେଇ ଦୃଶ୍ୟବସ୍ତୁ ସହିତ ତା'ର ସର୍ବତୋଭାବେ ପରିଚୟ ଥିବା ଆବଶ୍ୟକ । ଅନ୍ତତଃ ସ୍ପଷ୍ଟ ଧାରଣା ଥିବା ଆବଶ୍ୟକ । ଏଠାରେ, ଯେ କୌଣସି କବିକୃତିର ଉପଲଭ୍ୟ ଅନୁଭବରୁ ଅନୁରୂପ ଭାବରେ ପାଠକ ଦୂରେଇଯିବା ସମ୍ଭବ । କବି ଦୀନକୃଷ୍ଣ ଏ ଶ୍ରେଣୀର ସମାଲୋଚକଙ୍କୁ 'କଠୋର ରସିକ' ବୋଲି – କଠୋର ରସିକ ଏହା ଭାବ ନ ଜାଣନ୍ତି / କମଳମଣ୍ଡୁକ ପ୍ରାୟେ ତାହାଙ୍କର ରୀତି – ଉକ୍ତିରେ ନାପସନ୍ଦ କରିଛନ୍ତି ।

ଏ ଦୃଷ୍ଟିରୁ, ଏକ ସାକ୍ଷାତ୍‌କାରରୁ ଲେଖକଙ୍କର ମତୋଦ୍ଧାର କରାଯାଉଛି: ''ଆମ ଦେଶରେ ଆଜିକାଲି ପରି ସମାଲୋଚକ ଥିଲେ ବୋଲି ମନେ ହେଉନାହିଁ । ଟୀକାକାର ଥିଲେ, ଚର୍ଚ୍ଚାକାର ଥିଲେ, ଅଛନ୍ତି ଓ ରହିବେ । ଏଠି ଆଲୋଚକ ସ୍ଥାନରେ କୁହାଯାଉଥିଲା – ସହୃଦୟ, ଯେ କବିର ସମାନହୃଦୟ ହୋଇ ତା'ର ଭାବ ବୁଝିବ, ଘେନିବ । ସେ ଯଥାର୍ଥ ପାଠକ । କବି ଅଭିମନ୍ୟୁ ଠିକ୍ କହିଛନ୍ତି – ବିବେକ ଗ୍ରାହକ କୋଟି କବି-ଆୟୁ ଘେନି / ବର୍ତ୍ତିଥିଲେ କବି କବିତ୍ୱ କି ହେବ ଗ୍ଲାନି । ଏହି ବିବେକୀ ବା ବିବେଚନାଶୀଳ ଗ୍ରାହକ ହିଁ ସହୃଦୟ । *ଅସଲ କଥା ଯେ, ପ୍ରଥମ ବ୍ୟକ୍ତି 'କବି' ତାକୁ ଗ୍ରହଣ କରେ ନାହିଁ, କିମ୍ବା ଦ୍ୱିତୀୟ ବ୍ୟକ୍ତି 'ସହୃଦୟ' ତାକୁ ଲୋଡ଼େନାହିଁ । ସେଇ ତୃତୀୟ ବ୍ୟକ୍ତି (ସମାଲୋଚକ) ହେଉଛି – ଜୀବନବୀମା ଏଜେଣ୍ଟ୍ ଭଳି ଜବରଦସ୍ତ ।'' (ବର୍ତ୍ତିକା, ପୂଜାସଂଖ୍ୟା' ୯୬, ପୃ – ୪୫୪)

ଏଇ ପ୍ରସଙ୍ଗରେ ପ୍ରାଚୀନ କବି 'ସଜ୍ଜନ' କହନ୍ତି ଯଥାର୍ଥ ପାଠକ କାବ୍ୟାନୁଭବ ନିମନ୍ତେ କଠୋର ରସିକ ରସପଣ୍ଡିତଙ୍କ ଦୃଷ୍ଟି ଆକର୍ଷଣ କରିବା ଅସଂଗତ, ଅନୁରୂପ ଅବସ୍ଥାରେ ଯେପରି ଭୃଙ୍ଗ ଅନ୍ୟର ପ୍ରବର୍ତ୍ତନା ଲୋଡ଼େ ନାହିଁ –

ବାଣୀ ମମୈବ ସରସା ଯଦି ରଞ୍ଜୟିତ୍ରୀ
ନ ପ୍ରାର୍ଥୟେ ରସବିଦାମବଧାନ-ଦାନମ୍ ।
ସାଂୟନ୍ତନୀଷୁ ମକରନ୍ଦବତୀଷୁ ଭଙ୍ଗାଃ
କିଂ ମଲ୍ଲିକାସୁ ପରମନ୍ତ୍ରଣମାରଭନ୍ତେ ।

---

* ପୂର୍ବେ, ବୋଧହୁଏ ଏଇ ପ୍ରାତିକାରଣରୁ କାବ୍ୟ ବା ସାହିତ୍ୟର ରସଜ୍ଞମାନେ ବାଣୀବନ୍ଦନା ଏଇପରି ଗାଉଥିଲେ –

କବୀନ୍ଦ୍ରହୃଦୟାମ୍ଭୋଜ-ନିବାସ-ଭ୍ରମରୀଂ ନୁମଃ
ଦେବୀଂ ସହୃଦୟାନନ୍ଦ-ଶବ୍ଦମୂର୍ତ୍ତିସରସ୍ୱତୀମ୍ ॥

ଅନ୍ୟାନ୍ୟ ସାହିତ୍ୟ କ୍ଷେତ୍ରରେ କବିଙ୍କ ମଧରେ ଏପରି ଅନାଗ୍ରହ ଲକ୍ଷ୍ୟ କରିହୁଏ । ଆଲେକ୍‌ଜାଣ୍ଡାର ପୋପ୍ କଟାକ୍ଷ କରିଛନ୍ତି – Not in the critic let the man be lost (An Essay of Criticism;523) ପୁନଶ୍ଚ, ୱାର୍ଡସ୍‌ୱାର୍ଥ୍ ଅନୁରୂପ କହିଲେ –

Sworn not the Sonnet; Critic you have frowned,
Mindless of its just honours; with this key
Shakespeare unlocked his heart.

– (Miscellaneous Sonnets)

ବିଶେଷତଃ ଏଠାରେ ଉଦ୍ଧାପିତ ସେକ୍ସପିୟରଙ୍କ ଦୃଷ୍ଟାନ୍ତଟି ସ୍ପଷ୍ଟ ଓ ପ୍ରଣିଧାନଯୋଗ୍ୟ । ତାହା ଲେଖକଙ୍କର, ତଥା ପାଠକଙ୍କର ସପକ୍ଷତା କରୁଛି ।

କେବଳ ସାରସ୍ୱତ ମାର୍ଗ ପ୍ରଦର୍ଶନ ପରିଣାମ କର୍ମରେ ଟୀକାକାରଙ୍କର ଅଧିକ ଭୂମିକା ନ ଥାଏ; ସେମାନେ ପାଠକର ସ୍ୱାତନ୍ତ୍ୟରେ ସ୍ୱମତକ୍ଷେପ କରିନଥାନ୍ତି । ସେମାନେ ପୁରାତନ କୋଳରେ ଜନ୍ମ ନେଇଥିଲେ ବି ବିଚାରବୋଧରେ ଯଥାର୍ଥବାଦୀ, ଏବଂ କୌଣସି ବାଦ ବା ism ବିରହିତ । ସେଇପରି ଯଥାର୍ଥବାଦୀ ମଧ୍ୟ ଦୃଷ୍ଟାନ୍ତ ସ୍ୱରୂପ ଉଲ୍ଲିଖିତ ବିଦେଶୀ ଆଲୋଚକ ।

ଏଇ ମନୋଗ୍ରାଫ୍‌ଟିର ଏକାଧିକ ଅଧ୍ୟୟନରୁ ଉପଲବ୍ଧ ନିଷ୍କର୍ଷଟି ମୁଁ ଉପସ୍ଥାପନ କଲି ଏବଂ ଏଥିପାଇଁ ପ୍ରହରାଜ ସତ୍ୟନାରାୟଣ ନନ୍ଦ ପ୍ରଶଂସାଯୋଗ୍ୟ । ଭାବିଲେ, ତାଙ୍କର ଆଲୋଚନା ପରେ ବିଶେଷ କିଛି କହିବାର ନାହିଁ । କାରଣ, ଏହା ବେଶ୍ ପାଠକ-ସହାୟ ହୋଇପାରିବ । ପୁଣି, କବି ଅନନ୍ତଙ୍କର ବହୁ କୃତି ସେ ପାଠକ ସମକ୍ଷରେ ଏଥିରେ ଉପସ୍ଥାପିତ କରିଛନ୍ତି । ପାଠକ ପାଇଁ, ରୁଚି ଅନୁଯାୟୀ ବିଚାର ଓ ରସାସ୍ୱାଦନ ଦୃଷ୍ଟିରୁ, ସେ ପ୍ରଶସ୍ତ କ୍ଷେତ୍ର ବି ପ୍ରସ୍ତୁତ କରିଛନ୍ତି ।

ଏ ସତ୍ତ୍ୱେ କବି ଅନନ୍ତଙ୍କ କୃତିରାଶିର ମୁଖ୍ୟ ବିଭାବଗୁଡ଼ିକର ଆବଶ୍ୟକ ସୂଚନା ଦେବା ମୁଁ ସଙ୍ଗତ ମନେ କରୁଛି ।

ଲେଖକ ବା କବିର ସାରସ୍ୱତ କୃତିରାଶି ସହିତ ଜୀବନ ସଂପର୍କ କ'ଣ ଅଛି ଓ କେତେ ଅଛି ଜଣାଇବା ପାଇଁ ତାଙ୍କର ଆବଶ୍ୟକ ଚରିତ୍ର ଚିତ୍ର ଦିଆଯାଏ । ସ୍ଥଳବିଶେଷରେ ଏ ଦିଗଟି ଅଜ୍ଞାତ ରହିଗଲେ ମଧ୍ୟ କୃତିରାଶିର ନିବିଡ଼ ଆବେଦନ ଆସ୍ୱାଦନରେ ବାଧା ଉପୁଜେ ନାହିଁ, ଯେପରି କାଳିଦାସ ଏବଂ ଅନ୍ୟାନ୍ୟ ଅନେକ ସ୍ରଷ୍ଟା, କାରିଗର । ଏପରି ସ୍ଥଳେ କବିର ଅଧିକତର ହୃଦ୍ୟତା ନିର୍ଭର ଚରିତ୍ରଟି ନିମନ୍ତେ ପାଠକ କ'ଣ ଝୁରିହୁଏ ନାହିଁ, ସ୍ୱପ୍ନ ଦେଖେ ନାହିଁ ? ମାତ୍ର ଚରିତ୍ରଟିଏ ଉପଲବ୍ଧ ହେଲେ କବିର ସୃଷ୍ଟି ଭିତରେ ତହିଁର କିଛି କିଛି ଅନ୍ତରଙ୍ଗ ସ୍ପର୍ଶମାନ ଅନୁଭବ କରିବାର ସୁଯୋଗ ମିଳେ ।

ଆଲୋଚ୍ୟ ତରୁଣ କବିଙ୍କଠାରେ ଜାତୀୟ ମୁକ୍ତି ସଂଗ୍ରାମର ଉଦ୍‌ବୁଦ୍ଧ ଆକର୍ଷଣ ଏବଂ ଗାନ୍ଧିଜୀଙ୍କ ମୋହନ ଆହ୍ୱାନ, ସମସ୍ତ ଦଳିତ, ପତିତ, ଅସ୍ପୃଶ୍ୟ ଆଦି ଦରିଦ୍ର ଜାତିମାନଙ୍କର ଉତ୍‌ଥାନ ତଥା ନବ ଜାଗରଣ ନିମନ୍ତେ ଆନ୍ତରିକ ଆନ୍ଦୋଳନ, – ପରିଣାମତଃ ପାରିବାରିକ ସମ୍ଭ୍ରାନ୍ତ ସୁଖ ସ୍ୱାଚ୍ଛନ୍ଦ୍ୟର ବିସର୍ଜନ ସଫଳ ରୂପେ ଅବତୀର୍ଣ୍ଣ ହୋଇଛି । ଏଇ ତ୍ୟାଗମୟ ଜୀବନ କେବଳ ତାଙ୍କର ଏକକ ବ୍ୟକ୍ତିତ୍ୱର ନୁହେଁ, ପାରିବାରିକ ତ୍ୟାଗର ଏକ ମହନୀୟ ଚିତ୍ର । ଏଇ ମୂଳ ବିଶ୍ୱାସ ଥିଲା– ଗାନ୍ଧିଜୀ-ପ୍ରେରଣା ସମ୍ଭୂତ, ଭାରତୀୟ ସଂସ୍କୃତି ଓ ସଂସ୍କାର ସମ୍ୱଳିତ । ଗାଁ ଗହଳି ବା ଗଡ଼ଜାତ ପରିବେଶ ଭିତରେ ପ୍ରଜାମଣ୍ଡଳ, କୃଷକ ସଂପ୍ରଦାୟ ବା ଜନସାଧାରଣ ମଧ୍ୟରେ ରାଜନୀତିକ ତଥା ସାମାଜିକ ସ୍ତରୀୟ ଛନ୍ଦାଛନ୍ଦି ମୁକ୍ତିବାର୍ତ୍ତା ପ୍ରଚାର ମାଧ୍ୟମରେ ସେ ନିଜକୁ ବିସ୍ତାରିତ କରି ଦେଇଥିଲେ । ତହିଁରେ ଦରିଦ୍ର ନାରାୟଣ ପୂଜକ, ମୁକ୍ତି ସଂଗ୍ରାମୀ ଗାନ୍ଧୀ, ଗୋପବନ୍ଧୁ ପ୍ରମୁଖଙ୍କ ସହିତ ଭିନ୍ନ ଦେଶୀ, ଭିନ୍ନ ଦର୍ଶନ ଅଥଚ ସମକାଳୀନ ଓ ସମସଂଗ୍ରାମୀ ମାର୍କସ୍, ଲେନିନ୍‌ଙ୍କ ପରି ଚିନ୍ତାନାୟକ, ବିପ୍ଳବନାୟକମାନଙ୍କର ଉଦ୍‌ବୋଧିତ ପ୍ରେରଣା କବି ଅନନ୍ତଙ୍କ କର୍ମ ଜୀବନର ସମନ୍ୱିତ ଆଧାର ରୂପେ ପ୍ରକଟିତ ହେଲା । ସାମ୍ୟବାଦୀ ଏଇ ସାଧନ ଓ ସାଧନାରେ ନବ ବାବୁ, ଭଗବତୀ ବାବୁ, ସଚ୍ଚିବାବୁ ପ୍ରଭୃତି ଅନେକେ ତାଙ୍କର ସମ ସଂଗ୍ରାମୀ ଥିଲେ; କିନ୍ତୁ ସେ ଥିଲେ ଭଗବତୀବାବୁଙ୍କ ପରି ଏଇ ନୂତନ ଆଦର୍ଶ ପଥରେ ଏକନିଷ୍ଠ (involved) ସାଧକ, ସଚ୍ଚିବାବୁ, କାଳିନ୍ଦୀବାବୁଙ୍କ ପରି କବି ।

ସାହିତ୍ୟ ସଂପର୍କ ରକ୍ଷା ଦିଗରୁ ସାମ୍ୟବାଦୀ, ସଂଗ୍ରାମୀଙ୍କ ପକ୍ଷରୁ ୧୯୩୫ରେ 'ନବଯୁଗ ସାହିତ୍ୟ ସଂସଦ' ସ୍ଥାପିତ ହେଲା । 'ଆଧୁନିକ' ନାମିତ ସାହିତ୍ୟ ପତ୍ରିକାଟିଏ ଏ ସମଗ୍ର ନୂଆ ଚେତନାର ବାହକ ହୋଇ ପ୍ରକାଶିତ ହେଲା । ଏଇ ଅବସ୍ଥାରେ ସମକାଳୀନ ପ୍ରଗତିଶୀଳ ଲେଖକମାନଙ୍କର ସମୂହ ଆଭିମୁଖ୍ୟ 'ପ୍ରଗତିବାଦ' ରୂପେ ଗୃହୀତ ହେଲା । ସଂକ୍ଷିପ୍ତ, ମିତସାର ରୂପେ କୁହାଯାଇପାରେ – ପୁଞ୍ଜିବାଦୀ / ଶୋଷକ ଏବଂ ଦରିଦ୍ର / ଶୋଷିତ; ଏ ଦୁଇ ଶ୍ରେଣୀ ମଧ୍ୟରେ ଘାତ ପ୍ରତିଘାତ ଓ ସଂଘର୍ଷ ଲକ୍ଷ୍ୟର ଚିତ୍ର ସାହିତ୍ୟ ସୃଷ୍ଟିର ବିଭିନ୍ନ କ୍ଷେତ୍ରରେ ଓ ଆଙ୍ଗିକରେ ନିବେଦିତ ହେଲା । ଏ ପ୍ରସଙ୍ଗରେ ବେଶ୍ ଚାଞ୍ଚଲ୍ୟ ଆଣିଥିବା, ସଚ୍ଚିବାବୁଙ୍କର 'ଆଗନ୍ତୁକ' କବିତାଟିର ଆଦ୍ୟ ପଦ୍ୟାଂଶ ମାତ୍ର ମନେ ପଡ଼ୁଛି –

''ମୁଁ ଶିକାର କରେ ଜଙ୍ଗଲର ସେଇ
ଉଚ୍ଛିଷ୍ଟତ୍ୟାଗୀ ମଖମଲ ଦେହୀ ବାଘ
ଟେର୍ଛା ଦନ୍ତୁରିତ ଝରଣା କୂଳରେ ବସି କରି ହାଲୁ ମାରେ ।''

ବାଘ ମଖମଲଦେହୀ (ବିଳାସୀ ଓ ସୁନ୍ଦର) ହେଲେ ବି ଜଙ୍ଗଲୀ ସ୍ୱଭାବର, – ହିଂସ୍ର ଓ ନୃଶଂସ, ନିଜ ଜଠରରୁ କିଞ୍ଚିତ୍ ବଳିଲେ (ହେଟା, ଶୃଗାଳ ଆଦି)ଦୁଃସ୍ଥମାନେ ନାଁକୁ କିଛି ପାଇବେ । ଖାଇ ସାରି, ଘନ ଜଙ୍ଗଲର ଶୀତଳ ଝରଣା କୂଳରେ ସେ ବସି ହାଇ ମାରୁଛି । ସାମ୍ୟବାଦୀ କବି ଏଠି ଶିକାରୀ... । ତେବେ, ଜଣେ ଅନାମଧେୟ କବି W.J.Turnerଙ୍କର ମୌଳିକ ବା ଅନୁରୂପ ପଙ୍‌କ୍ତିଟି ହେଉଛି –

I hunt the velvet tiger

in the Prussian jungles...

ମାତ୍ର ଏଥିରେ ଆରମ୍ଭକାଳୀନ ନାଜୀମାନଙ୍କୁ ଲକ୍ଷ୍ୟ କରାଯାଇଥିବା ମନେହୁଏ । ଆଉ ଗୋଟିଏ ବିଶେଷ ଦୃଷ୍ଟାନ୍ତ ହେଉଛି – ଶିକାର । ଏ ଗଳ୍ପର ଲେଖକ ହେଉଛନ୍ତି ଭଗବତୀ ଚରଣ ପାଣିଗ୍ରାହୀ । ଏ ଗଳ୍ପଟି ପୁଞ୍ଜିବାଦୀ–ବିରୋଧୀ ବୋଲି ଧରାଯାଏ । ମାତ୍ର ସରଳ ଆଦିବାସୀ ଜୀବନରେ ଜଣକ ସ୍ତ୍ରୀ ସହିତ ଅନ୍ୟ ଜଣକର ଅବୈଧ ସଙ୍ଗମ ଜାଣିପାରିଲେ ସ୍ୱାମୀ ଜଣକ ତାକୁ ହତ୍ୟା କରି ଅନୁରୂପ ଭାବରେ ଧରା ଦେବା ଆଦୌ ଅସାଧାରଣ ନୁହେଁ ।

ଅନନ୍ତଙ୍କର ଅସଲ ପ୍ରତିଭା ହେଉଛି, କବିତ୍ୱ । ଏହାର ସରଳ ଅର୍ଥ ବୋଲୁଲେ କବିତ୍ୱ ବୋଇଲେ କବିତ୍ୱ । ଏବଂ କବି ହୃଦୟର ଉତ୍‌ସାରିତ ପ୍ରଥମ ସ୍ୱର ସଂପଦ । ରୋମାଣ୍ଟିକ୍, ଗୀତି-ପ୍ରବଣ ଓ ଗୀତମୂର୍ଚ୍ଛିତ । ସୃଷ୍ଟିର ଏଇ ଆଦି ପର୍ବରେ ହୃଦୟଗ୍ରାହ୍ୟ ଶବ୍ଦସମ୍ଭାର, ଏଥିରେ ଜଡ଼ିତ ମାତ୍ରାବୃତ୍ତ, ଆନୁପ୍ରାସିକତା, ଏପରିକି, ପରିଣତ ବୟସର 'କାଳିସୀ ଲାଗିଲା ମତେ' ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏ କବିତାର ନାଟକୀୟତା ଓ ଦ୍ରୁତଛନ୍ଦ ମନୋହର । ମିତ୍ରାକ୍ଷର ମେଳ ସତ୍ତ୍ୱେ ବି ଏହା ଆଧୁନିକ ରହିଛି ।

ଏ କବିତା ପର୍ଯ୍ୟାୟରେ ସ୍ୱପ୍ନ ଦେଖୁଚି, ଝରରେ ରୁଧିର, ମେଘକନ୍ୟାରେ, ଚଇତି ଚିଠି ଆଜି, ଚଳା ବଉଦରେ, ଡାକୁଚି ସେ ଯେ ତୋହରି ସାଥୀ, ମନରୁ ଖିଏ, ଏଇ ଶରତର ସକାଳ ଉଖାରି ଦେଲି ଆଦି ପାଠକ ପ୍ରିୟ କବିତା ବିଦ୍ୟମାନ । ଏହା ଭିତରୁ କେତୋଟି ବିଶିଷ୍ଟ ଉଦ୍ଧୃତି ଦିଆଯାଉଛି –

ଗୁଣୁଚି ଗୀତା କେତେ ଶୁଣୁଚି ଭାଗବତ
ଛାତିରୁ ଖସେ କାହିଁ ଶୂନ୍ୟ ପରବତ ।
ଆସିବନି କି ସତେ ଚଇତ ଯାଏ ବହି
ଏ ଜନ-ବନାନୀରେ ଏକା କେ ପାରେ ରହି ?

କେତେ ଯେ ଲୋଳ ଆଖି ଦୋଳାଇ କୁତୂହଳେ
ଛଣାଏ ନଈଁ ନିତି ଆବେଶେ ରସ-ଛଳେ
ଥାଆନ୍ତା ପାଶେ ଯଦି ବକଟେ ନାଁକୁ କେହି
ଲେଖନ୍ତି ନାଇଁ ଚିଠି ଏସନ ଦୁଃଖ ଦେଇ ।

(ଚଇତି ଚିଠି ଆଜି)

ପରମପ୍ରିୟ ଲୋକ କବି ପଣ୍ଡିତ ଗୋଦାବରୀଶଙ୍କ ସ୍ମୃତି ଉପଲକ୍ଷେ ସେ ଲେଖିଥିଲେ –

ନଈରେ ପଡ଼ିଚି କଳା ଡଅଁର ଲୋ
ଘାଉଁରି ଯାଉଚି ନାଆ,
କିଏ ମୋଡ଼ିଦିଏ ଏଦିଗେ ସେଦିଗେ
କିଏ ଲୋ କାହାର ସାହା !

ଏବଂ

ଭୁଲିବ କି କହ ! ପାହାଡ଼ୀ ନଈର
ସୋହାଗ ଉଚ୍ଛୁଳା ତାନ,
ପାଟଫୁଲି ତଳେ କେଉଁ କିଶୋରୀର
ପାଟଳିମ ଅଭିମାନ ।

ଚମତ୍କାର ଏଇ ଶେଷ ପଦଟି କେତେ ଶ୍ରଦ୍ଧା, ଦରଦ ତଥା କେତେ ଟ୍ରାଜେଡ଼ି, ଦୁଃଖ, ନୈରାଶ୍ୟ – କେତେ ଅକୁହା କଥା ।

ଛଟକିନୀ ବଡ଼ କଟକ ନଗରୀ
ସତେ କି ରଖିବ ମନେ ?
ଆଜି ଫୁଲମାଳ କାଲିକି ବାସି ଲୋ
ପୋଡ଼ା ମୁହେଁ ଲୁହ କ୍ଷଣେ !

(ଚଲା-ବଉଦରେ)

ସ୍ୱାଧୀନତା ସଂଗ୍ରାମ ବେଳେ ବିପ୍ଳବିଣୀ ନାରୀ କବି କୁନ୍ତଳାଙ୍କର ଏଭଳି ଗୋଟିଏ ପଦ ସ୍ମରଣୀୟ –

ଭାଇ ଭାଇ ବୋଲି ଉଚ୍ଚେ ଦେଉଁ ଡାକ,
ବକ୍ତୃତା -ମଞ୍ଚରେ ଦେଶପ୍ରେମ ଯାକ
ସଭାରେ ଅଜାଡ଼ି କାନ୍ଦି କଲମରେ
ଫେରୁଁ ଶୂନ୍ୟ ମନେ ଶୂନ୍ୟ ହୃଦୟରେ ।

ମନେହୁଏ, ଉତ୍କଳମଣି ଗୋପବନ୍ଧୁଙ୍କ ସ୍ମୃତି ପୂଜା ଉପଲକ୍ଷେ କବି ଅନନ୍ତଙ୍କ ବିରଚିତ 'ଡାକୁଚି ସେ ଯେ ତୋହରି ସାଥୀ' ହେଉଛି ପାଠକ ସମାଜରେ ସର୍ବତୋଭାବେ ବଳି ପ୍ରିୟ କବିତା । ଦୁଇଟି ମାତ୍ର ଦୃଷ୍ଟାନ୍ତ ଦିଆଯାଉଛି –

ଲୁହରେ ଲୁହ ମିଶାଇ କେହି ପ୍ରଳୟ ନିଆଁ ଜାଳିଚି ଆଉ
ଶିଳାରେ ଶିଳା ବଜାଇ ସିନା କଳଇ କିଏ ମଣିଷ ଭାଉ
କିଏ ସେ କହ ତାହାରି ସମ
ସେନେହ-ଶରେ କରିଚି ରଣ ?
ମରମ-ଦିଆ ନରମ ସ୍ୱରେ ଶମାଇ ଶତ ଦୁଃଖ ଦାଉ ।
ତାହାରି ଲୁହ, ତାହାରି ହସେ, ଖସିନି କିରେ ଶାସନ ରାହୁ ?
ଏ ଜାତି ବଡ଼ ଦେଉଳ ସେ ଯେ ବିସ୍ମୃତିର ବାଲୁକା ତଳୁ
ଦୁନିଆ ଦ୍ୱାରେ ଆଣିଚି ନୀତି ମଣିଷ ସେବା- ଅଶ୍ୱେ ଚଳୁଁ ।
ଏ ଜାତି ଗାଲମାଧବ ସେ କି ।
ଯାଇନି ନିଜ କୀରତି ଲେଖି ?
କେତେ ଏ ଜାତି-ବୋଇତ ଲାଗି ମହାଦୀପ ସେ ଅନିଭା ଜଳୁଁ
ଜିଆଁଏ ତା'ର ପରାଣ ତାପେ ନିରାଶ ଯେତେ, ଦୁଃଖୀ, ମଲୁ !

ଅନନ୍ତଙ୍କର ଏଇପରି ଆହୁରି ଅନେକ କବିତା କିସମ୍ କିସମ୍ ଅଛି, ତହିଁରେ ସାମ୍ୟବାଦୀ କବିତା ମୁଖ୍ୟ । କିନ୍ତୁ ଏ ପର୍ଯ୍ୟାୟରେ ତାଙ୍କର ବୈଶିଷ୍ୟ ହେଉଛି ମାର୍କସ୍ ଓ ଲେନିନ୍ ମତାନୁସାରୀ ଦଳିତ ଶୋଷିତଙ୍କ ସ୍ୱତ୍ୱାଧିକାର ପ୍ରାପ୍ତି ନିମନ୍ତେ ସଂଗ୍ରାମ ସହିତ ଗାନ୍ଧିଜୀ ମତାନୁସାରୀ ଅସ୍ପୃଶ୍ୟ ପତିତଙ୍କ ଅସ୍ପୃଶ୍ୟତା ନିବାରଣ ଏବଂ ସେମାନଙ୍କ ସାମାଜିକ ଓ ଆର୍ଥନୀତିକ ମାନଦଣ୍ଡର ଉନ୍ନତି ବିଧାନ ନିମନ୍ତେ ସଂଗ୍ରାମ – ଏ ଦୁଇ ସଂଗ୍ରାମର ମଧୁର ମିଳନ । ସାମ୍ୟବାଦ ହିଂସା ବିରହିତ ନୁହେଁ, ଗାନ୍ଧୀବାଦ ଅହିଂସା, ପ୍ରୀତି ନିର୍ଭର ଓ ମୁଖ୍ୟତଃ ମାନବବାଦୀ । ଏହା ହେଉଛି ସେନେହଶରେ ରଣ କରିବା କଥା । ରୁଷିଆରେ ଷ୍ଟାଲିନ୍‌ଙ୍କ ପର୍ଯ୍ୟନ୍ତ ଓ ଚୀନ୍‌ରେ ମାଓସେତୁଙ୍ଗ୍‌ଙ୍କ ପର୍ଯ୍ୟନ୍ତ ପ୍ରତିଟି ଦେଶର ଆଲେଖନ (Painting)ରେ ଏବଂ କାବ୍ୟକବିତାରେ ବା ନାଟକରେ ଆର୍ଟିଷ୍ଟ ଓ ଲେଖକମାନେ ନିଜ ନିଜ ନେତୃପୁରୁଷଙ୍କ ମନ ତୋଷ ପୂର୍ବକ ସ୍ୱକୀୟ ସ୍ରଷ୍ଟା ଚେତନାକୁ ମୁକ୍ତି ବିକାଳି ପରି ବିସର୍ଜି ଦେଇଛନ୍ତି । ସନ୍ତୋଷ ହୁଏ ଯେ କବି ଅନନ୍ତ ଏଇ ଆଗନ୍ତୁକ ସାମ୍ୟବାଦକୁ ଗ୍ରହଣ କରିଥିବା ସତ୍ତ୍ୱେ ଏହା ସହିତ ଗାନ୍ଧିଜୀ ପ୍ରେରଣା-

ସମୃଦ୍ଧ ଆପଣା ସଂସ୍କୃତି ଓ ସଂସ୍କାରକୁ ଏଥିରେ ବିଜଡ଼ିତ କରି ଦେଇଛନ୍ତି । ବୋଧହୁଏ, ଗାନ୍ଧିଜୀଙ୍କ 'India of my. Dreams' ପୁସ୍ତକରୁ 'Daridra-Narayan' ନିବନ୍ଧଟି କବିଙ୍କୁ ପ୍ରଭାବିତ କରିଥିବ । ଭାରତୀୟ କବି, ଗଳ୍ପକାର ଆଦି ଲେଖକମାନେ ସେତେବେଳେ ପ୍ରାୟ ଏଇ ଲେଖାର କବଳରୁ ରକ୍ଷା ପାଇ ନ ଥିଲେ – ତାହା ହିଁ ହେଉଛି ଏକ ସମ୍ଭାବନା ।

ବିଦେଶୀ ସାମ୍ୟବାଦ ହିଂସା ବିରହିତ ନୁହେଁ ବୋଲି କହିବା ବେଳେ ଆମ ଦେଶୀ ମହାକବି ବ୍ୟାସଙ୍କର ଏମନ୍ତ ଏକ ଉକ୍ତି ପ୍ରଣିଧାନଯୋଗ୍ୟ –

ଯାବଦ୍‌ଭ୍ରିୟେତ ଜଠରଂ ତାବତ୍ ସ୍ୱତ୍ୱଂ ହି ଦେହିନାମ୍
ଅଧିକଂ ଯୋଽଭିମନ୍ୟେତ ସ ସ୍ତେନ ଦଣ୍ଡମର୍ହତି ।। (ଭାଗବତ)

ଜଣେ ଲୋକର ଉଦରପୋଷଣ ପାଇଁ ଯେତିକି ଦରକାର, ତାହା ହିଁ ତା'ର ସ୍ୱତ୍ୱ, ସଂପତ୍ତି । ଯେ ଅଧିକ ଲୋଭ କରି ସଞ୍ଚୟ କରେ (ଅନ୍ୟଙ୍କ ସ୍ୱତ୍ୱରୁ ସଂଗ୍ରହ କରିଥିବା ଫଳରୁ) ସେ ଚୋର; ସେ ଦଣ୍ଡଯୋଗ୍ୟ । (ପ୍ରୟୋଜନ ସ୍ଥଳେ ଏ ଦଣ୍ଡ ପ୍ରାଣଦଣ୍ଡ ପର୍ଯ୍ୟନ୍ତ ହୋଇପାରେ)

ଅନନ୍ତଙ୍କର ଦୁଇ ଖଣ୍ଡ ନାଟକ – ରାବଣ ଓ ଚିର ଅନ୍ଧାର ରାତି । ଏ ଦୁଇଟି ପ୍ରାୟ ପାଠକଙ୍କ ଦୃଷ୍ଟିରେ ପଡ଼ି ନ ଥିଲା । ତାଙ୍କର ପ୍ରଥମ ନାଟକ 'ରାବଣ' ରଚନା ଚଣାହାଟ ହାଇସ୍କୁଲରେ ହେଡ୍‌ମାଷ୍ଟର ଥିବା ବେଳର । ରାବଣର ପାରମ୍ପରିକ ଚରିତ୍ର ଏଥିରେ ନାହିଁ । ତା'ର ଘୋର ତପସ୍ୟାର ଫଳ ତା'ର ନୂତନ ବ୍ୟକ୍ତିତ୍ୱକୁ ପରାର୍ଥ ପରାୟଣ ଓ ଆକର୍ଷକ କରିଛି । ଏ ତପସ୍ୟାରେ ସ୍ୱାର୍ଥ ତା'ର କାମ୍ୟ ନ ଥିଲା । କାମ୍ୟ ଥିଲା ଲଙ୍କାବାସୀଙ୍କ କଲ୍ୟାଣ । କାରଣ ସେମାନେ ପ୍ରଜା ଓ ସେ ରାଜା । ସେଥିପାଇଁ ସେମାନଙ୍କ ଦାରିଦ୍ର୍ୟ ବିଷୟ ଚିନ୍ତା କରି ସେ ଯେମିତି ଛନ୍ଦି ହୋଇଯାଉଥିଲା – କିନ୍ତୁ ଦାରିଦ୍ର୍ୟ ଯିବ କିପରି ? ବ୍ରହ୍ମା ମଧ୍ୟ ରାବଣର ଆନ୍ତରିକତା ଯୋଗୁଁ ଦର୍ଶନ ଦେବାବେଳେ ତାକୁ କହିଛନ୍ତି – ଜାଣେ ରାବଣ, ତୁ ଲଙ୍କାବାସୀଙ୍କ ପାଇଁ ତପସ୍ୟା କରୁଛୁ । ରାବଣ ଯେମିତିକି ରାମ ହୋଇଯାଇଛି ।

ମେହେର ଲେଖିଛନ୍ତି, ଦୁଷ୍ମନ୍ତ ଯେତେବେଳେ ହେମକୂଟ ଆଶ୍ରମରେ ପହଞ୍ଚି ଦେଖିଲେ କଶ୍ୟପ ତପସ୍ୟାରେ ମଗ୍ନ ଅଛନ୍ତି, ସେ ତପସ୍ୟାର ଉଦ୍ଦେଶ୍ୟରେ ଅନୁପ୍ରାଣିତ ହୋଇ କହିଲେ –

ମୋ ସୁଖ ଜଗତେ ବିତରିବା ପାଇଁ
ଏଠାରେ ହେଉଛି ମନ,
ନିଜ ସୁଖ କି ହିଁ ଏକାକୀ ଭୁଞ୍ଜିବେ
ସ୍ୱଭାବ–ତିତିକ୍ଷୁ ଜନ ।

ରାବଣ ଠିକ୍ ସେଇପରି ତପସ୍ୟାର ମର୍ମଟି ବୁଝିଛି ଅନନ୍ତଙ୍କ ଲେଖନୀରେ । ଏଇ ନୂତନତା ଯୋଗୁଁ ରାବଣ ନାଟକ ସେତେବେଳେ ବେଶ୍ ଲୋକପ୍ରିୟ ହୋଇଥିବ ।

'ଚିର ଅନ୍ଧାର ରାତି' ହେଉଛି ଗ୍ରାମ୍ୟ ଜୀବନର ଚିତ୍ର; ଶୋଷିତ ଓ ଶୋଷକଙ୍କ ମଧ୍ୟରେ ଘଟୁଥିବା ଦୁଃଖଦ ଘଟଣାବଳୀ । ଦରିଦ୍ରଙ୍କ ଦୁଃଖ କଷ୍ଟ ବଢ଼ିଯାଉଛି । ଯେଉଁମାନେ ଶୋଷକ ହୁଅନ୍ତେ ସେଇମାନେ ଏଇ ଦୁଃଖ ଯନ୍ତ୍ରଣାର କାରିଗର ।

ଅନନ୍ତଙ୍କ କ୍ଷୁଦ୍ରଗଳ୍ପ ସମ୍ଭାର ପ୍ରଚୁର ନୁହେଁ । ଫେରିଆ, ଚନ୍ଦ୍ରାଭାଗା, ମର୍ଡ଼ରର୍, ଡାଉନ୍‌କ୍ଲି ଫୁଲ, ପ୍ଲାଟଫର୍ମ ଆଦି କେତୋଟି ମାତ୍ର । ଏ ସମସ୍ତ ଗଳ୍ପ ତାଙ୍କର କଳ୍ପିତ ନିଜସ୍ୱ ଆଙ୍ଗିକ, ଅନୁଭବ, ଅଭିଜ୍ଞତା ଏବଂ ଲୋକସାଧାରଣ ଭାଷାରେ ପ୍ରସ୍ତୁତ ହୋଇଥିବାରୁ ମନୋରମ ।

କବି ଅନନ୍ତ ଶିଶୁ ସାହିତ୍ୟିକ ଭାବରେ ବେଶ୍ ପରିଚିତ । ଶିଶୁଙ୍କ ପାଇଁ କବିତା, ଗଳ୍ପ ଲେଖିବାରେ ସେ ସିଦ୍ଧହସ୍ତ । 'ଶିଶୁଲେଖା' ପତ୍ରିକାର ସଂପାଦନା–ଦାୟିତ୍ୱରେ ଥିବାବେଳେ ସେ ତା'ର ସୁଚାରୁ ନିର୍ବାହ କରୁଥିଲେ; ନୂଆ ନୂଆ ଶିଶୁ ସାହିତ୍ୟ ଲେଖକ ସନ୍ଧାନ କରି ତାଙ୍କ ଠାରୁ ଯଥୋଚିତ ଲେଖା ସଂଗ୍ରହ କରୁଥିଲେ । ଏଇ ସଂପାଦନା- ଦାୟିତ୍ୱ ଗ୍ରହଣ ପୂର୍ବରୁ ମଧ୍ୟ ଶିଶୁ ସାହିତ୍ୟର ସେ ସୁଖ୍ୟାତ କବି ଓ ଗାଳ୍ପିକ ଥିଲେ । ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ 'ସାହିତ୍ୟ'ର ରଚନା, ସଂକଳନ ଓ ସଂପାଦନାରେ ସେ ଶିଶୁ ସାହିତ୍ୟକାରର ସେଇ ଆଦର୍ଶ ଅବ୍ୟାହତ ରଖିଥିଲେ ।

କବି ଅନନ୍ତ ପଟ୍ଟନାୟକଙ୍କ କୃତିରାଶିର ପ୍ରତିଟି ବିଭାବ ଉପରେ ପ୍ରହରାଜ ସତ୍ୟନାରାୟଣ ନନ୍ଦ ପ୍ରାଞ୍ଜଳ ଓ ସନ୍ତୋଷଜନକ ଆଲୋଚନା କରିଛନ୍ତି ।

**ବେଣୁଧର ରାଉତ**
**ମହାନଦୀ ବିହାର, କଟକ**

# ଏଇ ମୁଁ ଜନ୍ମିଲି, ଆରେ !

Where tireless striving stretches its arms
towards perfection;
Where the clear stream of reason has not lost
its way into the dreary desert
sand of dead habit;
Where the mind is led forward by thee into ever –
widening thought and action–
Into the heaven of freedom, my Father, let my country awake.

**–Rabindranath Tagore**

ଅତୀତର ଆଧୁନିକ ସ୍ରଷ୍ଟାମାନେ କେତେକ ପର୍ଯ୍ୟାୟରେ ଆଜି ଆମେ ଯେଉଁପରି ଜୀବନ ଯାପନ କରୁଛୁ ସେ ସଂପର୍କରେ ସଚେତନ ଥିଲେ । ବାକ୍ୟଟି ଷ୍ଟିଫେନ୍ ସ୍ପେଣ୍ଡର୍‌ଙ୍କର । 'ଅନ୍ଧବିଶ୍ୱାସ' ଓ 'ଅପରାଧଶୀଳ ଆଭିଜାତ୍ୟ' ଉପରେ କୁଠାରଘାତ କରିବା ପାଇଁ ଆମେ ଆଜି ଯେଉଁ ମୁଷ୍ଟିମେୟ କବିଙ୍କୁ ସ୍ମରଣ କରୁ ସେମାନଙ୍କ ମଧ୍ୟରେ ଅନନ୍ତ ପଟ୍ଟନାୟକ ଅନ୍ୟତମ ।[୧] ଆଧୁନିକତାର ତନୁ ତ୍ୟାଗ ହୁଏ ପ୍ରାୟତଃ ପ୍ରତି ଦୁଇ ଦଶନ୍ଧିରେ । ନୂଆ ନୂଆ ସ୍ରଷ୍ଟାଙ୍କର ବା ପୁରାତନ ସ୍ରଷ୍ଟାଙ୍କର ନୂଆ ସ୍ୱର ଝଂକୃତ ହୁଏ ସମୟର ବଡ଼ଦାଣ୍ଡରେ । କବିତା ସୃଷ୍ଟି କାଳରୁ ମୁଖ୍ୟତଃ କଳା ଓ କ୍ରାନ୍ତିର ସମନ୍ୱିତ ସ୍ୱର ମହାନ୍ ସ୍ରଷ୍ଟାଙ୍କ କଣ୍ଠରୁ ନିଃସୃତ ହୋଇଛି । ଏକ ସଂଯୋଗ ରେଖା ରହିଛି ଐତିହ୍ୟ ସହିତ, ଚେର ମାଡ଼ିଚି ଦେଶ ମାଟିରେ ।

କାଳର ପରିବର୍ତ୍ତନରେ କଳାର ବିବର୍ତ୍ତିତ ରୂପ ଯଶସ୍ୱୀ ସଂକେତ ଦିଏ ଜୀବନର ସମୃଦ୍ଧି ପାଇଁ । ଦଶର ଦିଶାରୀ ହୁଏ ।

ସ୍ୱାଧୀନତାର ପ୍ରାକ୍ କାଳରେ ଭୂମିଷ୍ଠ ହୋଇଥିବା କବି ପରିଣତ ବୟସରେ ସଂସ୍ମରଣ କରିଛନ୍ତି 'ଶସ୍ୟହୀନ ପ୍ରୀତି ପ୍ରାନ୍ତର'ରେ, 'ବୀର୍ଯ୍ୟହୀନ କାଳ-କାନ୍ତାର'ରେ ତାଙ୍କର ଜୀବନ ଜାତକ ଲେଖା ହୋଇଛି:

ମୁଁ ଏଇ ଜନ୍ମିଲି, ଅନା !
ଇତିହାସ ମର୍ମରିତ ଝାଉଁବୀଥି ତଳେ
ଯୁଗ ଯୁଗ ପ୍ରଧାବିତ ଯାତ୍ରୀର ଗହଳେ !
ମୁଁ ଏଇ ଜନ୍ମିଲି, ଆରେ !
ଉତ୍ସବର ବନ୍ଧୁକ କ୍ରୀଡ଼ାରେ,
ନବତମ ଯାତ୍ରୀ ମୁହିଁ,
କାହିଁ ଦୂରେ କମାଣେ କମାଣେ,
ଆବର୍ତ୍ତିତ ମରଣର ଜୀବନ ପ୍ରମାଣେ !

x x x

ବେଦନାର ବଡ଼ଦାଣ୍ଡେ–
ପ୍ରୀତିର କୈବଲ୍ୟ ଯାଚି
ଦୁର୍ନିବାର ହସରେ ହସରେ
କେତେ ରାଜକୀର୍ତ୍ତିର ଉଷରେ
ଉଡ଼ାଇ ସ୍ୱର୍ଣ୍ଣର ଧୂଳି
ଫୁଲି ଫୁଲି
ଶାଶ୍ୱତ ନଶ୍ୱରେ
ଭାଷାହୀନ ଉଷାର ଆକାଶେ
ମୁଁ ଯେ ତୁମ ପ୍ରଜ୍ଞାର କାହାଣୀ
ରୋମାଞ୍ଚିତ ଚେତନାର ବାଣୀ ।

'ଯୁଗ ଯୁଗ ଧାବିତ ଯାତ୍ରୀ'ଙ୍କ ଗହଣରେ ଆସିଥିବା ଅନନ୍ତ ରବୀନ୍ଦ୍ରନାଥଙ୍କ ଉକ୍ତିର ମର୍ମ ବୁଝିଥିଲେ ।

---

୧. କାବ୍ୟ ଓ କଳାକାର : ଶ୍ରୀ ଚିନ୍ତାମଣି ବେହେରା

ଆଧୁନିକ ଓଡ଼ିଆ ସାହିତ୍ୟ ଇତିହାସର ପୃଷ୍ଠା ଲେଉଟାଇବା ବେଳେ ୧.୯୩୬ ମସିହାରୁ ଅନନ୍ତ ପଟ୍ଟନାୟକଙ୍କର ଉଲ୍ଲେଖନୀୟ କାବ୍ୟିକ ଅବଦାନ ବିବିଧ କାରଣରୁ ଆମର ଦୃଷ୍ଟି ଆକର୍ଷଣ କରେ । ୧୯୧୨ରେ ଏ କବି ଭୂମିଷ୍ଠ ହୋଇଥିଲେ ଜୁନ୍ ୧୧ ତାରିଖରେ । ତାଙ୍କର ପିତାମାତା– ଚୌଧୁରୀ ଜୟକୃଷ୍ଣ ପଟ୍ଟନାୟକ ଓ ମାଧବୀ ଦେବୀ– ଧର୍ମନିଷ୍ଠ ଜୀବନ ଯାପନ କରୁଥିଲେ । ୧୯୧୮ ଚୈତ୍ର କୃଷ୍ଣ ଦଶମୀରେ ସେମାନେ ଇହଲୀଳା ସମ୍ବରଣ କରିଥିଲେ । ଦୀର୍ଘ ଦିନର ଶୃଙ୍ଖଳା ଓ ନିରବଚ୍ଛିନ୍ନ ଜପତପ ଆଚରଣ ଫଳରେ ମାଧବୀ ଓରଫ୍ ମହାଦେଈଙ୍କ କୋଳ ମଣ୍ଡନ କରିଥିଲେ ଅନନ୍ତ ଓ ଗୁରୁଚରଣ । ପୀଡ଼ିତ ସ୍ୱାମୀଙ୍କ ଯନ୍ତ୍ରଣାଦଗ୍ଧ ମୁହୂର୍ତ୍ତ ସହ୍ୟ କରି ନ ପାରି ତାଙ୍କର ଆକସ୍ମିକ ମୃତ୍ୟୁ ଆଶଙ୍କାରେ ମହାଦେଈ ଧୈର୍ଯ୍ୟହରା ହୋଇଥିଲେ । ନିଜର ପ୍ରାଣ ବିସର୍ଜନ କରିବା ଆଶାରେ ସେ କୂଅକୁ ଲମ୍ଫ ଦେଇଥିଲେ । ନିଖୁଣ ଅବସ୍ଥାରେ ତାଙ୍କୁ ଅବଶ୍ୟ ଉଦ୍ଧାର କରାଯାଇଥିଲା । ମାତ୍ର କେତେଦିନ ପରେ ଜୟକୃଷ୍ଣ ମୃତ୍ୟୁଶଯ୍ୟା ନିକଟରେ ଉପସ୍ଥିତ ରହିବା ପାଇଁ ମହାଦେଈଙ୍କୁ ଡକାଇଲେ । ବାର୍ତ୍ତା ହୃଦୟରେ ପହଞ୍ଚିବାର ଟିକିଏ ଆଗରୁ ତାଙ୍କ ପ୍ରାଣପକ୍ଷୀ ମରଦେହର ପଞ୍ଜୁରୀ ଖୋଲି ସେପାରିକୁ ଉଡ଼ି ଯାଇଥିଲା ।

ମାତ୍ର ପାଞ୍ଚ ବର୍ଷର ଶିଶୁ ଅନନ୍ତଚରଣ ଓ ମାତ୍ର ଏକ ବର୍ଷ ପୂରିଥିବା ଗୁରୁଚରଣଙ୍କର ଲାଳନପାଳନ ଦାୟିତ୍ୱ ନ୍ୟସ୍ତ ଥିଲା ପିତାମହୀ ସୁଲୋଚନାଙ୍କ ଉପରେ । ପିତାମାତାଙ୍କ ଆଦରରୁ ବଞ୍ଚିତ ହୋଇଥିବା ଶିଶୁମାନେ କୋଣାର୍କ ନିକଟସ୍ଥ ଶିରିପୁରରେ ମାମୁଘର ତତ୍ତ୍ୱାବଧାନରେ ବଢ଼ିଥିଲେ । କିଛି ଦିନ ମଧ୍ୟରେ ମନଲୋଭା ପ୍ରାକୃତିକ ଦୃଶ୍ୟ, ନିକଟ ସଂପର୍କୀୟମାନଙ୍କ ମନଭୁଲା ଆଦର ସେମାନଙ୍କ ମନରେ ଆନନ୍ଦ ଭରି ଦେଇଥିଲା ।

ତା'ପରେ ଆରମ୍ଭ ହେଲା ବିଦ୍ୟାଭ୍ୟାସ ପର୍ବ । ଶିରିପୁରର ଅନିନ୍ଦ୍ୟ ସୁନ୍ଦର ପ୍ରାକୃତିକ ପରିବେଶକୁ ଭୁଲି ଜନ୍ମମାଟି ଚଣାହଟ୍ଟାର ଗ୍ରାମ ବିଦ୍ୟାଳୟରେ ସେମାନେ ନାମ ଲେଖାଇଲେ । ଖୁଡ଼ି ବସନ୍ତକୁମାରୀ ଦେବୀ ଏବଂ କକା ସତ୍ୟବାଦୀ ଦାସଙ୍କ ପ୍ରଗାଢ଼ ଯତ୍ନ ଯୋଗୁଁ ସେମାନେ ଲେଖାପଢ଼ାରେ ପାରି ଉଠିଲେ । ନିରାଡ଼ମ୍ବର ଗ୍ରାମ୍ୟ ପରିବେଶ ମଧ୍ୟରେ ଅଧ୍ୟୟନରେ ମନୋନିବେଶ କରିବା ଥିଲା ସେମାନଙ୍କ ତପସ୍ୟା । ଚୌଧୁରୀ ପରିବାରର ଆଖପାଖରେ ବେଶ୍ ସୁନାମ ଥିଲା । ଛାତ୍ରାବସ୍ଥାରୁ ଅନନ୍ତ ଓ ଗୁରୁଚରଣ ସାମାଜିକ ଅବସ୍ଥା ସଂପର୍କରେ ପ୍ରାୟତଃ ସଚେତନ ହେବାକୁ ଲାଗିଲେ ।

ସେମାନଙ୍କ ଶୈଶବ କାଳରେ, ଜାତୀୟ ସ୍ତରରେ ବହୁ ଯୁଗାନ୍ତକାରୀ ଘଟଣା ଦୃଶ୍ୟପଟ୍ଟ ପରିବର୍ତ୍ତିତ କଲା । ୧୯୪୨ର ଭାରତ ଛାଡ଼ ଆନ୍ଦୋଳନ ଏବଂ ପ୍ରଥମ ବିଶ୍ୱ ଯୁଦ୍ଧୋତ୍ତର

ନିଅଣ୍ଟିଆ ପରିସ୍ଥିତି ଅବଚେତନରେ ସେମାନଙ୍କୁ ପ୍ରଭାବିତ କରିଥିଲା । ଧୀରେ ଧୀରେ ମହାତ୍ମା ଗାନ୍ଧୀଙ୍କ ଡାକ ଶୁଭିଲା କାନକୁ, ରବୀନ୍ଦ୍ରନାଥଙ୍କ କବିତାର ପଂକ୍ତି ଶ୍ରେଣୀଗୃହରେ ଧ୍ୱନିତ ହେଲା । ଶ୍ରୀଅରବିନ୍ଦଙ୍କ ପ୍ରେରଣାଦାୟୀ ଉକ୍ତି ସ୍ୱାଧୀନତା ସଂଗ୍ରାମ ପାଇଁ କ୍ଷେତ୍ର ପ୍ରସ୍ତୁତ କଲା । ମନକୋଣରେ ପରାଧୀନତାର ଅନ୍ଧାର କକ୍ଷ ତଳେ, ମୁକ୍ତିର ଶିଖା ପ୍ରଜ୍ୱଳିତ କରିବାର ଦୁର୍ବାର ଆକାଂକ୍ଷା ଜାଗି ଉଠିଲା । Vivian Deroziଓଙ୍କ ସ୍ୱର ଯେମିତି ଝଙ୍କୃତ ହେଉଥିଲା:

Well let me dive into the depths of time,
And bring from out the ages that have rolled
A few small fragments of those wrecks sublime,
Which human eyes may never more behold;
And let the guerdon of my labour be
My fallen country ! One kind wish from thee !
To strive, to seek to find, and not to yield:

**– Tennyson.**

# ଶୈଶବରୁ ବାପୁଙ୍କ ଜନ୍ମ

ପିଲାଟି ଦିନରୁ ଅନନ୍ତ ଗାଆଁ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ନିଜ ଆଖିରେ ଦେଖୁଥିଲେ । ଦୁଃଖୀରଙ୍କି ପାଇଁ ହୃଦୟରେ ଅନୁକମ୍ପା ଭରି ଉଠୁଥିଲା । ଲୋକମାନେ ବିଦେଶୀ ଶାସନର ଅନ୍ୟାୟ ଅତ୍ୟାଚାର ବିଷୟରେ ଅବହିତ ରହିବା ଉଚିତ ବୋଲି ସେମାନଙ୍କର ଧାରଣା ହୋଇଥିଲା । ଗୁରୁଚରଣ ବୟସରେ ଛୋଟ ହେଲେ ମଧ୍ୟ ତାଙ୍କର ଭାବୁକ ସ୍ୱଭାବ ବଡ଼ ଭାଇ ବାରି ପାରୁଥିଲେ । ଗାନ୍ଧିବାଦୀ ଆଦର୍ଶର ସପକ୍ଷ ବିପକ୍ଷରେ ବହୁ ଯୁକ୍ତି ଶୁଣା ଯାଉଥିବା ବେଳେ ଅନନ୍ତ ଲେଖିଥିଲେ :

ଦସ୍ୟୁ ଦଳେ ଦେଶଟା ଆଜି ଗଲାରେ ଗଲା ଛାଇ
ସାତ ସାଗର ସେପାଖେ ବସି ଦସ୍ୟୁ ମାରେ ହାଇ,
ଭାଇର ବୁକୁଁ ରୁଧିର ପିଏ ଏଇ ଦେଶର ଭାଇ
ଏଇ ଶୋଷକ ଦସ୍ୟୁକୁଳେ କରରେ ଛାରଖାର
ଦେଶୀ ବିଦେଶୀ ସମାନ ଦୁହେଁ ସମାନ ଅତ୍ୟାଚାର ।

(ରକ୍ତଶିଖା, ୧୯୩୯)

ମସିଆ ପିନ୍ଧି ଠୁକ୍ ଠୁକ୍ ଚାଲୁଥିବା ବୃଦ୍ଧଙ୍କ ଆଖିରେ ଅପୂର୍ବ ଆଲୁଅର ପ୍ରତ୍ୟୟ ସେ ଦେଖି ପାରୁଥିଲେ । ଗାନ୍ଧିଜୀ ଯେଉଁ ବୃକ୍ଷ ତଳେ ଆଶ୍ରୟ ନେଉଥିଲେ ଫଳଝାଡ଼ରେ ସେ ବୃକ୍ଷ ଭରି ଯାଉଥିବାର ବର୍ଣ୍ଣନା ଦେଇଛନ୍ତି ଅନନ୍ତ । ବିଦ୍ୟାଳୟରେ ପଢୁଥିବା ବେଳେ ଗାନ୍ଧିଜୀଙ୍କ ସଂପର୍କରେ ରଚିତ ତାଙ୍କ କବିତା ଉଚ୍ଚ ପ୍ରଶଂସିତ ହୋଇଛି । ଜାତୀୟ ଚେତନାରେ ତାଙ୍କର

କିଶୋର ମାନସ ଭାସ୍ୱର ହେବା ଦିନୁ ମହାତ୍ମାଙ୍କ ମହାର୍ଘ ଆଲେଖ୍ୟ ସେ ଅନବଦ୍ୟ ଶୈଳୀରେ ଅଙ୍କନ କରିଛନ୍ତି । ଗାନ୍ଧୀ ଆଦର୍ଶରେ ଅନୁପ୍ରାଣିତ ତାଙ୍କ କାବ୍ୟିକ ଅଭିଦୃଷ୍ଟି ଯନ୍ତ୍ରଣା ଜର୍ଜରିତ ବିଶ୍ୱକୁ ଆପଣାର କରିଛି । ଅନେକ ଅଭୀପ୍ସୁ ହୃଦୟରେ ସତ୍ୟ ଶାନ୍ତି ମୈତ୍ରୀ ପ୍ରେମର ପ୍ରେରଣା ସଂଚାରିତ କରିଛି । ଗାନ୍ଧୀଙ୍କ ଅନୁଚିନ୍ତାରେ ଉଦ୍‌ବୁଦ୍ଧ ହୋଇ ଲେଖୁଥିବା କବିମାନଙ୍କ ମଧ୍ୟରେ ଓଡ଼ିଆ କବିତା ଇତିହାସରେ ଅନନ୍ତ ପଟ୍ଟନାୟକଙ୍କ ମର୍ଯ୍ୟାଦା ଯଥେଷ୍ଟ ଉଚ୍ଚରେ । ଜାତୀୟ ସମସ୍ୟାକୁ ଆଖି ଆଗରେ ରଖି ପରାଧୀନ ସମୟର ବହୁ ବ୍ୟଥାବିପାକ ସେ ମର୍ମସ୍ପର୍ଶୀ ଭାବେ ଚିତ୍ରଣ କରିଛନ୍ତି । ସରସ ଛନ୍ଦ, ଗ୍ରାମୀଣ ଓ ସଂସ୍କୃତ ଶବ୍ଦ ବିନ୍ୟାସରେ ଲାଳିତ୍ୟ ସୃଷ୍ଟି ତାଙ୍କ କବିତାର ଆବେଦନ ଓ ଅନ୍ତରଙ୍ଗତା ବୃଦ୍ଧି କରିଛି । ଗାନ୍ଧିଜୀଙ୍କ ପଦାଙ୍କ ଅନୁସରଣର କାବ୍ୟିକ ନିଷ୍ଠା ବ୍ୟକ୍ତ ହୋଇଛି 'ତର୍ପଣ କରେ ଆଜି' କବିତାରେ – ଅନୁତାପ ଭରା ହୃଦୟରେ ସେ ସମଗ୍ର ଜାତିର ଅଶ୍ରୁ ଅର୍ଘ୍ୟ ନିବେଦନ କରିଛନ୍ତି :

ପିତୃ ଶୋଣିତେ ଅନ୍ଧ ନୟନ ମାଜି
                    ତର୍ପଣ କରେ ଆଜି
ପିତୃଘାତୀ ଏ ଆତ୍ମଘାତୀଗୁଁ ଜାତି,
ଗଭୀର କୃଷ୍ଣ ଜୀବନ ଯମୁନା ତୁଠେ
ହତାଶ ପ୍ରାଣର ମତ୍ତ ବତାସି ଉଠେ
                    ଚିତ୍ତେ ଥରଇ ପ୍ରଳୟ ଦୁଃଖୁଁ ତାତି ।
ଭ୍ରାତୃ ଶବରେ ଭରିଲା ଜୀବନ ଖମା
ପିତୃ ଶୋଣିତ ଅଞ୍ଜଳି ପୁଟେ ଜମା,
ତୃଷ୍ଣା ପାଗଳ ବିକୃତ ମନପ୍ରାଣ
                    ଲୁପ୍ତ ସତେ କି ପୁଣ୍ୟ ପ୍ରୀତିର ରାଣ ।
ଲଜ୍ଜାଜଡ଼ିତ ଦୁଃଖ ପୀଡ଼ିତ ତ୍ରାସେ
କମ୍ପିତ କ୍ରୋଧେ ବ୍ୟର୍ଥ ବିକଳ ହାସେ
                    ଆପଣା ବକ୍ଷେ ଆପେରେ ବଜ୍ର ହାଣି ।
ଉତ୍ତାଳତାର ଅଶ୍ରୁ– ବାରିଧି କୂଳେ
ଆଶ୍ରୟ ଲୋଡ଼ି କଳ୍ପବଟର ମୂଳେ,
                    ତର୍ପଣ କରେ ତୁମରି ମନ୍ତ୍ର ଆଣି
                    ହେ ମହାରାଗିଣୀ ମୃତ୍ୟୁବିନାଶୀ ବାଣୀ ।

ଗାନ୍ଧିଜୀଙ୍କ ମୃତ୍ୟୁରେ କବି କିନ୍ତୁ ପୂର୍ଣ୍ଣମାତ୍ରାରେ ଭାଙ୍ଗି ପଡ଼ି ନାହାନ୍ତି । ତାଙ୍କ ଆଦର୍ଶ ଓ ଉପଦେଶ ଦିନେ ବିଶ୍ୱଜନୀନ ହେବ ବୋଲି ଆସ୍ଥା ରଖିଛନ୍ତି :

ତୁମରି ଅସ୍ଥି ବଜ୍ର କରି କି ସତେ,
ଚୂର୍ଣ୍ଣ କରିବ ଅନ୍ୟାୟ ପର୍ବତେ ?

'ଏତେ ନିଷ୍ଠୁର କେଉଁ ଦିନୁ' କବିତାର ଉପୋଦ୍‌ଘାତରେ କବି ଗାନ୍ଧିଜୀଙ୍କୁ ହତାଶା ମଧ୍ୟରେ ଦିଗ୍‌ଦର୍ଶନ ଦେବା ପାଇଁ ଅନୁନୟ କରିଛନ୍ତି :

ଏତେ ନିଷ୍ଠୁର କେଉଁ ଦିନୁ ବାପୁ କହ
କେସନେ ଆମର ଅଶ୍ରୁ ଆକୁଳ ଡାକେ
ତୁନି ରହ ତୁନି ରହ ।
ନିରାଶା ବିଷାଦେ ଚିତ୍ତ ହେଉଛି ଘାରି
ଦୁର୍ବହ ଦୁଃଖେ ଜୀବନ ଲାଗୁଛି ଭାରୀ
ସମୀପେ ସୁଦୂରେ ଶ୍ରାନ୍ତିହରଣ ଛାଇ
ନ ଦିଶେ ବାପୁଜୀ କାହିଁ,
ମୃତ୍ୟୁ ସାଗର ଉଚ୍ଛଳି ଆସେ ଧାଇଁ
କାହା ବାହୁ ପାଶେ ଆଶ୍ରୟ ନେବୁ ଯାଇ
କହ ହେ ବାପୁଜୀ । କହ ।
ଧୂମ୍ରଳ ଏହି ଶୂନ୍ୟ ନଭସ ତଳେ
ଆତ୍ମା ବିହଗ ମୂର୍ଚ୍ଛିତ ଅହରହ ।

x x x

ସଜଳ ଚକ୍ଷୁ ସଥର ଓଷ୍ଠ ପୁଟେ
ବିପ୍ଳବୀ ତୁମ ବିପ୍ଳବ ଗୀତି ଫୁଟେ
ଜନନୀ ସ୍ତନ୍ୟ ସୁଏ,
ବାପୁଜୀ । ତୁମର ନିର୍ଦ୍ଦେଶ ନିତି ନୂଏଁ ।

ଭଗ୍ନ ମନରେ ଭବିଷ୍ୟତ ପ୍ରତି ଉଦାସୀନ ରହିବାର କ୍ଷତିକାରକ ଧାରଣା ମଣିଷକୁ ଯୁଗେ ଯୁଗେ ଭାଗ୍ୟବାଦୀ କରିଛି । ଜାତିର ଭାଗ୍ୟ ଉଜ୍ଜ୍ୱଳ କରିବା ପାଇଁ ସାମୂହିକ ଚେତନା କିପରି ମହାନ୍ ନିର୍ଦ୍ଦେଶର ଅପେକ୍ଷାରେ ଥାଏ ତାହା କବି ଭୁଲି ନାହାନ୍ତି । ସେ 'ଲକ୍ଷ ବରଷ ପରେ' କବିତାରେ ଗାନ୍ଧିଜୀଙ୍କ ଆଦର୍ଶ କିପରି ରୂପ ନେବ ତା'ର ନିଖୁଣ ଚିତ୍ର ଦେଇଛନ୍ତି :

ପଲ୍ଲୀ ନଗରେ ନ ଥିବରେ ଯେବେ
ତୁଚ୍ଛତା ବ୍ୟବଧାନ,
ଏଇ ବାପୁଜୀର ତୀର୍ଥ ଭାରତେ
ଥରୁଥିବ ମହାପ୍ରାଣ
ବୁଦ୍ଧର ଗୀତି ଯିଶୁର ଶୋଣିତ
କୃଷ୍ଣର ପ୍ରୀତି ନୂପୁର କ୍ୱଣିତ
'ବାପୁଜୀ' 'ବାପୁଜୀ' ରବେ
ହସୁଥିବ ଧରା ସୁଖ ସମ୍ଭୋଗେ
ସଖ୍ୟର ବଇଭବେ ।
ତରୁଣ ଜନର ଶାନ୍ତି ସେନାନୀ
ବିପ୍ଳବ ରଥ ବାହୁଥିବେ ଜାଣି
ଗୋଟି ପରେ ଗୋଟି କେତେ ଯେ
ସ୍ୱର୍ଗପୁରେ ।
ଝଲୁଥିବ ଖାଲି ଆମର ଶପଥ
ଗମ୍ଭୀର ଧୀର ଉଚ୍ଚ ମହତ
ବାପୁଜୀ ତୁମରି ସୁରେ ।
ସତ୍ୟ ଅହିଂସା ମୈତ୍ରୀ ପରଶ
ଧରଣୀରେ କରେ ସ୍ନିଗ୍ଧ ସରସ
ଯାଏରେ ମୃତ୍ୟୁ ଯାଏ,
ଶୁକ୍ଳ ଶ୍ୟାମଳ ଗୈରିକ ହାସେ
ବାପୁଜୀ ବିଳସୁ ଥାଏ ।

ଦେଶଦଶର ଅବସ୍ଥା ସଂପର୍କରେ ନିଜସ୍ୱ ବିଚାର ପ୍ରୟୋଗ କରିବାକୁ ଶୈଶବରୁ ଅନନ୍ତ ଭଲ ପାଉଥିଲେ । ଦେଶ ପରାଧୀନ ଥିବାରୁ କଥାକଥାକେ ବିପ୍ଳବର ଦୁହାଇ ଦେଇ ସେ ଅନ୍ୟମାନଙ୍କ ମନୋବଳ ବଢ଼ାଉଥିଲେ । ଦୁର୍ବଳ ଭାବନା ପ୍ରାୟତଃ ତାଙ୍କର କୌଣସି କବିତାରେ ନ ଥିଲା । ଜନସାଧାରଣଙ୍କୁ ବିଦେଶୀ ଅତ୍ୟାଚାର ବିରୋଧରେ ସଂଗଠିତ କରିବାର ଦାର୍ଶନିକ ଆବେଦନ ଶବ୍ଦ ଛନ୍ଦର ଲଳିତ ତୀକ୍ଷ୍ଣ ବିନ୍ୟାସରେ ମନ କିଣି ନେଉଥିଲା । ସେ ଭୁଲି ଯାଇଥିଲେ ଜମିଦାର ବଂଶରେ ତାଙ୍କର ଜନ୍ମ । ସେ ଭୁଲି ଯାଇଥିଲେ ହଁ ଭରିବାକୁ ହୁଏ

କୌଣସି ବିଦେଶୀ ନିର୍ଦ୍ଦେଶନାମାକୁ ଅନ୍ଧ ଭାବରେ । ଅଗଣିତ ଅଜ୍ଞ ମଣିଷର ଦୁଃଖଦୁର୍ଦ୍ଦଶାରେ ତାଙ୍କ ଆଖି ଛଳ ଛଳ ହେଉଥିଲା । ମାନବ ଅଧିକାରକୁ ମର୍ଯ୍ୟାଦା ଦେବା ଦୁଃସାଧ୍ୟ ମନେ ହେଉଥିଲା । ତଥାପି ପାଦଟିଏ ଆଗେଇବାକୁ ଅଙ୍ଗୀକାର କଲେ । ଖଦୀ ପିନ୍ଧିଲେ । ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ଭଗବତୀ ପାଣିଗ୍ରାହୀ, ଦିବ୍ୟସିଂହ ଓ ଜଗବନ୍ଧୁଙ୍କୁ ସାଥୀ ଓ ସାରଥି ରୂପେ ଆପଣାର କଲେ ।

ସ୍କୁଲ ଛାଡ଼ି କଲେଜରେ ପାଦ ଦେଇଥିବା ତରୁଣ ସ୍ପେଣ୍ଡରଙ୍କ କବିତାର ପଂକ୍ତିଟିଏ ("I think continually of those who were truly great")ରେ ଯେମିତି ମନୋନିବେଶ କରିଥିଲେ । ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ବିଶେଷ ଅବଦାନ ଥିବା ମନୀଷୀମାନଙ୍କ ସହିତ କ୍ରମେ ନିଜକୁ ସଂଶ୍ଲିଷ୍ଟ କଲେ । ଏତିକିବେଳେ ରମା ଦେବୀ, ସରଳା ଦେବୀ, ନବକୃଷ୍ଣ ଚୌଧୁରୀ, ଭାଗୀରଥି ମହାପାତ୍ର ଓ ରାଜକୃଷ୍ଣ ବୋଷଙ୍କ ସଂପର୍କରେ ଆସିଲେ ଅନନ୍ତ । ୧୯୩୧ରେ ଆର୍ତ୍ତବଲ୍ଲଭ ମହାନ୍ତି ଓ ବ୍ରଜସୁନ୍ଦର ଦାସଙ୍କ ପରିଚାଳିତ ପ୍ରାଚୀ ସମିତି ସହିତ ସେ ସଂପୃକ୍ତ ହେଲେ । ଆଦ୍ୟ ଶୈଶବରୁ ତାଙ୍କ କବିତା ଦେଶର ଜନସାଧାରଣଙ୍କୁ ନିର୍ଯ୍ୟାତନା ବିରୋଧରେ ଲଢ଼ିବା ପାଇଁ ଆହ୍ୱାନ ଦେଇଥିଲେ ।

ବାସ ଓଲିତଳ, ଘରେ ନାହିଁ ଦାନା
ହଂସା ଉଡ଼ିଯାଏ, ହାଡ଼ ହୁଏ ଗଣା ।
କଂସା, ଥାଳି ବିକି ଦେଲୁଣି ଖଜଣା
ଆଉ କାହିଁ ପାଇଁ ଡରିବୁ ?
ଘର ଡିହ ଖଣ୍ଡି ନୋହେଁ ତ ଆମର
ନିଜ ଘରେ ଆମେ ଗୋଲାମ ପରର ।
ଗୋଇଠା ଖାଇଲେ ଅଇଁଠା ଚାଟୁଛୁ
କେତେ ଦିନ ଆଖି ବୁଜିବୁ ?
(ଆମେ ମୂଲିଆର ଜାତି ଜାଗିବୁ)

ବିଦେଶୀଙ୍କ ଦୁଃଶାସନର ପ୍ରତିରୋଧ କରିବା ପାଇଁ ସେ ଜିଦ୍‌ଖୋର ଖିଆଲରେ ଗାଇଛନ୍ତି –

ଯେଉଁ ଶାସନେ ମରେରେ ଶିଶୁ ମାଆର ଛାତି ପରେ
ଯେଉଁ ନିୟମେ କୋଟି ଜଠରେ ଭୋକର ନିଆଁ ଜଳେ
ଯାହାର ଲାଗି ତରୁଣକୁଳ ମୃତ୍ୟୁ ପଥେ ଚଳେ
ସେଇ ଶାସନ ଧ୍ୱଂସ କରି ନାଚରେ ବାରମ୍ବାର ।

କ୍ରମେ ସର୍ଜନାତ୍ମକ ଲେଖାରେ ତାଙ୍କର ଅନୁରାଗ ସାନ୍ଦ୍ର ହେଲା । କ୍ରମେ କ୍ରମେ ବିଶ୍ୱ ସାହିତ୍ୟର ପ୍ରଗତିବାଦୀ ଧାରାରେ ସେ ଅନୁପ୍ରାଣିତ ହେଲେ । କିନ୍ତୁ ତାଙ୍କ ଲେଖାରେ ଭାରତୀୟ ଜନଜୀବନର ନିଛକ ଚିତ୍ର ଅମ୍ଳାନ ରହିଲା । ସଂସ୍କୃତିର ଅପକର୍ମକୁ ସେ ନିନ୍ଦା କଲେ, ଆପଣା ପରିବେଶକୁ ତୀକ୍ଷ୍ଣ ରୂପ ଦେଲେ । ନିତିଦିନିଆ ଘଟଣା ଜାତି ପ୍ରାଣରେ ଯେଉଁ ସ୍ପନ୍ଦନ ସୃଷ୍ଟି କରୁଥିଲା କବି ପ୍ରାଣରେ ତାହା ଅନୁରଣିତ ହେବାକୁ ଲାଗିଲା । କବି ରୂପେ ଆତ୍ମପ୍ରକାଶ କରିବାର ଅଭୀପ୍ସାକୁ ଗୋଟିଏ ପଦରେ ସେ ସୁନ୍ଦର ଭାବେ ବ୍ୟକ୍ତ କରିଛନ୍ତି :

ଖୋଲି ଖୋଲି ଦେଲି ନିଜକୁ ଯେତେ ମୁଁ ଆଲୁଅ ପାଖୁଡ଼ା ପରି
ବାହାରି ପଡ଼ିଲି ଏକା,
ବୁଜି ବୁଜି ଗଲି ଅଧିକୁ ଅଧିକ ଆଘାତୁ ଆଘାତ ଲାଗି
ନିଜ ଠାରେ ପୁଣି ନିଜେ ମୁଁ ରହିଲି ଲେଖା ।

ସଂଗ୍ରାମୀ ମଣିଷର ସମସ୍ୟା ଅନୁଶୀଳନ କରିବା ପାଇଁ ସେ ଜାତୀୟ ଘଟଣାବଳୀ ଓ ମନୀଷୀମାନଙ୍କ ଅନୁଚିନ୍ତା ଅନୁଧାନ କରିବାକୁ ଲାଗିଲେ । ଗର୍କୀ, ଟଲଷ୍ଟୟ ଆଦି କୃତବିଦ୍ ସ୍ରଷ୍ଟାଙ୍କର ରଚନାବଳୀ ମଣିଷର ଦୁଃଖ ବୁଝିବା ପାଇଁ ତାଙ୍କୁ ଖୋରାକ ଯୋଗାଇ ଥିଲା । ଓଡ଼ିଆ ଛନ୍ଦ ସାହିତ୍ୟରୁ ସେ ଖୋଜି ପାଇଥିଲେ ଭାବ ପ୍ରକାଶର ଲାଳିତ୍ୟଭରା ଶୈଳୀ । ତାଙ୍କର କାବ୍ୟିକ ଯୁକ୍ତି ଥିଲା ବଳିଷ୍ଠ । ଭାଷା ସଂଯୋଜନାରେ ଯମକର ଝଲକ ଖେଳୁଥିଲା ପଦର ପ୍ରତ୍ୟେକ ପାଦରେ । ବୈୟକ୍ତିକ ଭାବନାର କମ୍ପାସମୁନ ବିଶ୍ୱ ପରିଧିକୁ ସ୍ପର୍ଶ କରୁଥିଲା । ମଣିଷର ସବୁ ଶୁଭଙ୍କର ପ୍ରୟାସର ସାଫଲ୍ୟ ଟୀକା ଆଶା କରୁଥିବା ଏଇ କବିଙ୍କ ଅଭିଦୃଷ୍ଟି ପାଠକ ପାଠିକାଙ୍କର ହୃଦୟ କିଣି ନେଉଥିଲା :

ହଟାଅ ! ହଟାଅ ! ମୃତ୍ୟୁବାହିନୀ ଦୁଆରୁ
ଆଉ ନାହିଁ ବେଳ, ଆଉ ନାହିଁ ବେଳ, ଭାଇରେ !
ଉଠାଅ ଉଠାଅ ଶାନ୍ତି ଅନଳ-ଲୁହାରୁ
ଦୁନିଆ ଛାତିରେ ସୈନ୍ୟଦଳ ଗଲା ଛାଇରେ ।

x x x

ହଟାଅ ! ହଟାଅ ! ମୃତ୍ୟୁବାହିନୀ ଦୁଆରୁ
କିଏ ଅଛ କାହିଁ ଆରେ ବିଦଳିତ ଜନତା !
ପ୍ରାଣ ଦେଇ ଆଣ ଶାନ୍ତି ଓଟାରି ଲୁହାରୁ
ଦୈତ୍ୟ କବଳୁଁ ଉଦ୍ଧାର ପ୍ରୀତି ମମତା !

(ହଟାଅ, ହଟାଅ !!)

'ଆସିଚି ମୁଁ ଆସିଚି'ରେ ସେ ଅନେକ ବାଧାବିଘ୍ନର ଅବତାରଣା କରି ସେ ସବୁକୁ ଉପେକ୍ଷା କରିବା ପାଇଁ ଅଙ୍ଗୀକାରବଦ୍ଧ:

କବନ୍ଧର ନୃତ୍ୟ ରଚନା କର କିଏ ? – ବନ୍ଦ କର !
ବିକୃତିର ବିଗ୍ରହ ରଚନା କର କିଏ ? – ତଫାତ୍ ହୁଅ !
ବନ୍ଧୁକର ବର୍ତ୍ମ ରୋଧ କରି ମୁଁ ଆସିଛି ।

x x x

ଯୁଗର ବକ୍ଷରେ ମୁଁ ଅକାଳ ବସନ୍ତର ତିତିକ୍ଷା
ମୁଁ ପୁରୁ !
କପାଳର ଘର୍ମ ତୁମର ଓଷ୍ଠ ପୁଟରେ ନଇଁ
ମୁଁ ଆସିଚି, ମୁଁ ଆସିଚି !
ଯନ୍ତ୍ର ମୁଖର ଦିବାକୁ ନିର୍ନିମେଷ ନୀରବତାରେ
ଦୀର୍ଣ୍ଣ କରି
ଆସିଚି, ମୁଁ ଆସିଚି !
ଆଣବିକ ଖଡ୍‌ଗ ଧର କିଏ ? ଦୂର ହୁଅ !

x x x

ଲଙ୍ଗଳର ପଥ ରୋଧ କର କିଏ ? – ପ୍ରସ୍ତର
ଶସ୍ୟର ସ୍ମିତ ରୋଧ କର କିଏ ? – ପଙ୍ଗପାଳ !
ଆତ୍ମାର କଣ୍ଠ ରୋଧ କର କିଏ ? – ଆତତାୟୀ !
ଅତିରୁଦ୍ଧ ସ୍ମିତ ମୋର ଛୁଟେ
ଦିକ୍-ଦିଗନ୍ତ ଛୁଟେ
ପ୍ରାଣର ପ୍ରଣବରେ ଦୂର ହୁଅ
କାତରାଶ୍ରୁର ପ୍ରେତ,
ମାତୃଘାତୀର ପ୍ରୀତି !
ଆସିଚି ମୁଁ ! ଆସିଚି
ହୃତ୍‌କର୍ମର ଜ୍ୱଳଦର୍ଚ୍ଚି ବର୍ତ୍ତି !

ଦେଶ ଓ ଦେଶବାସୀଙ୍କ ଚିନ୍ତାରେ ମନୋନିବେଶ କଲେ ତାଙ୍କ ମନଶ୍ଚକ୍ଷୁରେ ପ୍ରତିଭାତ ହୁଏ ଆନ୍ତର୍ଜାତିକ ଦୃଶ୍ୟପଟ । ଚଣାହଟାର ନିକାଞ୍ଚନ ପଲ୍ଲୀରୁ ସ୍ୱାଧୀନତାର ଜୟଗାନ ଝଙ୍କୃତ

କରୁଥିବା ମଣିଷଟି କେତେବେଳେ ଏସିଆର ଦୁଃଖଜର୍ଜର ମୁହଁ ଚିହ୍ନି ଆଖିରୁ ଲୁହ ପୋଛେ, କେତେବେଳେ ମଣିଷର ଦୁର୍ଭାଗ୍ୟକୁ ପରାହତ କରିବା ପାଇଁ ଶାନ୍ତିର ଇସ୍ତାହାର ଲେଖେ ବିଶ୍ୱର ଲଲାଟ ପଟଳରେ, କେତେବେଳେ ନିଜ ଭିତରେ ଉକୁଡ଼ି ପଡୁଥିବା ପ୍ରତ୍ୟୟର ଶିଳାଦୁର୍ଗକୁ ନିଖୁଣ ରଖିବା ପାଇଁ ମୈତ୍ରୀରେ ମଣିଷ ଜାତିର ହୃଦୟ ଛନ୍ଦେ । ଜଡ଼ତା, ଅଜ୍ଞତା ଓ ଅଭାବରେ ସଢୁଥିବା ମଣିଷ ପାଇଁ ଜାଗୃତିର ଉଦ୍ଦାମ ବାର୍ତ୍ତା ତାଙ୍କ କବିତାରେ ଝଙ୍କୃତ ହେଉଥିଲା ଅନୁକ୍ଷଣ । ଦେଶକାଳର ସୀମାରେ ବନ୍ଦୀ ରହିବାକୁ ସେ ଯେମିତି କୁଣ୍ଠାବୋଧ କରୁଥିଲେ ।

ନିଜ ଜୀବନକୁ ଗାନ୍ଧିଜୀଙ୍କ ଆଦର୍ଶରେ ଗଢ଼ିବା ପାଇଁ ଖଦଡ଼ ପରିଧାନ କରିଥିବା କଲେଜ ଛାତ୍ର ଅନନ୍ତ କଂଗ୍ରେସ ଅଧିବେଶନରେ ଓଡ଼ିଶା ଛାତ୍ର ପରିଷଦର ପ୍ରତିନିଧିତ୍ୱ କରିବା ପାଇଁ ଦିଲ୍ଲୀ ଯାଉଥିବା ବାଟରେ ଗିରଫ ହେଲେ । ଆଲିପୁର କେନ୍ଦ୍ରୀୟ କାରାଗାରରେ ତାଙ୍କୁ ବନ୍ଦୀ ଜୀବନର ଅକଥ୍ୟ ଲାଞ୍ଛନା ଭୋଗିବାକୁ ପଡ଼ିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଦାବି ଉପସ୍ଥାପିତ କରିବାରୁ ସେ ମଧ୍ୟ ବ୍ରିଟିଶ୍ ସରକାରଙ୍କ ଚକ୍ଷୁଶୂଳ ହୋଇଥିଲେ । ରେଭେନ୍‌ସା କଲେଜରୁ ତାଙ୍କୁ ବିତାଡ଼ିତ କରାଯାଇଥିଲା ସକ୍ରିୟ ରାଜନୀତିରେ ଅଂଶ ଗ୍ରହଣ କରିଥିବାରୁ । ୧୯୩୨ରେ ତଦାନୀନ୍ତନ ଅଧ୍ୟକ୍ଷ ପ୍ରାଣକୃଷ୍ଣ ପରିଜାଙ୍କ ଅନୁମୋଦନ କ୍ରମେ ସେ ପୁଣି କଲେଜରେ ନାମ ଲେଖାଇଲେ । ୧୯୩୪ରେ ଗାନ୍ଧିଜୀଙ୍କର ଓଡ଼ିଶା ପଦଯାତ୍ରା କାଳରେ ଅନ୍ୟତମ ପଦାଙ୍କ ସନ୍ଧାନୀ ରୂପେ ଆଦର୍ଶ ଉଦ୍‌ବୁଦ୍ଧ ଏଇ ତରୁଣ କବି ଜୀବନର ପାଥେୟ ସଂଗ୍ରହ କଲେ ଅବଚେତନରେ :

ଆସିଅଛି ଆଜି ପାଶେ ବାପୁ ଆମ ବାପୁରେ
ଆପଣାର ମନପୁର ପରିଧି କେ ମାପୁରେ ?
ଆଣିଅଛି ହସେ ତା'ର ଆଲୁଅର ଜୁଆର,
ଖୋଲିଯାଏ ଜୀବନର ଯେତେ ଦୁଃଖ ଦୁଆର ।
ଚାଷୀକୁଳ ପତାକା ସେ ଶ୍ରମିକର ଚାହାଣୀ,
କେତେ ପୁର ଲଳନାର ସକରୁଣ କାହାଣୀ ।
ତାହା ତହିଁ ଫୁଲ କେତେ ଶିଶୁ ହାସ ସରଳ;
ଆଉଁସାରେ ଖସେ କେତେ ପାପ ଆଖି ପରଳ ।
କିଏ ସେହି ପୁଚ୍ଛୁ କିରେ ଆଲୁଅରେ ଅନ୍ଧ,
ଅଚେତନ ପ୍ରାଣେ ସେ ଯେ ଚେତନାର ଛନ୍ଦ ।

ସନ୍ଥର ପାଶେ ସେ ଯେ ସତ୍ୟର ବଣିକ,
ଜନଗଣ ଅନ୍ତରେ ଖୋଜେ ପ୍ରୀତି ମାଣିକ ।
ଆପଣାର ନିର୍ବାଣ କାମନାରେ ମଗନ,
ନୋହେ ତା'ର ଶେଷହୀନ ସାଧନାର ଲଗନ ।
ସେ ଯେ ମହାଯୋଗୀରେ
କୋଟି ଜନ ମନରସ ସ୍ନେହସୁଧା ଭୋଗୀରେ ।
ଦୁଇପାଖେ ଶାଣିତ ତା' ପୀରତିର କୃପାଣ,
ଶତ୍ରୁର ଲାଗି ରଚେ ମୁକତିର ସୋପାନ ।
ସ୍ନିଗ୍ଧ ତା' ହସେ କେତେ ଧନୀଜନ ଶିହରେ,
ବଞ୍ଚିତ ମନ ସୁଖ ସଂପଦେ ବିହରେ ।
ଦସ୍ୟୁର ଦେହେ ନିତି ଦୁଃଖର ଚେତନ,
ଧନିକର ପୁରେ ସେ ଯେ କୁଟୀରର କେତନ ।
ଅନ୍ୟାୟ ମୁଖେ ନିତି ସତ୍ୟର ବରଷା,
ଭୋକିଲାର ଅନ୍ନ ସେ ମାଆ ହାତ ପରଷା ।
ସେ ଯେ ମହାଥପତି,
ମଣିଷର ମୁଖେ ଆଣେ ଦେବତାର ଦୃପତି ।
ଶିଳ୍ପର ପୁରାଣ,
କୋଣାରଖ ନିର୍ମାତା ଜାତି ହାତ–ନିହାଣ ।
କିଏ ମଣେ ଜନତାର ବୀର ସେନାପତି ହେ,
ଯୁଗେ ଯୁଗେ ଟୋଳିଥିବୁ ତା'ର ଜୟଛତି ହେ ।
ସେନାପତି ସେ ଯେ ତା'ର ଉଷ୍ଣୀଷ ତପନ,
ସାଞ୍ଜୁରେ ଝଲସଇ ଆଗାମୀର ସ୍ୱପନ ।
ମୁଖେ ତା'ର ସତ୍ୟର ଖର କରବାଳ ହେ,
ସୃଜନର ଛନ୍ଦେ ତା' ଥରେ ମହାକାଳ ହେ ।

ମାଟିର ଫୁଲ, ମନ୍ଦିରର ଦିଅଁ, ମୃତ୍ୟୁ ପଥରେ ଜୀବନର ନିଅଁ, ସ୍ୱର୍ଗର ଆନନ୍ଦ ଧାରା ଓ ଅନ୍ଧାର ବାଟରେ ଦିଶାରୀ ବାପୁଙ୍କ ଦୀର୍ଘ ଜୀବନ କାମନା କରୁଥିବା କବିଙ୍କ ହୃଦୟ ସେଦିନ

ସ୍ୱାଧୀନତାର ମହାର୍ଘ ମୂଲ୍ୟବୋଧକୁ ଆପଣାର କରିଥିଲା । ସତ୍ୟ ପଥରେ, ଧର୍ମ ପଥରେ ତାଙ୍କୁ ଘେନିଯିବା ପାଇଁ ନିବେଦନ ଜଣାଇଥିଲା କବିର ଅନ୍ତର । ନେତୃତ୍ୱ ଦେବାର ସମସ୍ତ ଶ୍ଳାଘ୍ୟ ଭାବରେ ସମୃଦ୍ଧ ହୋଇ ଅନନ୍ତ ପାଦ ବଢ଼ାଇଲେ ସଂଗ୍ରାମ ପଥରେ । ତାଙ୍କ କବିତାରେ 'ସଖି ସଜନୀ' ସମ୍ବୋଧନରେ ସେ ପରବର୍ତ୍ତୀ କାଳରେ ନାରୀ ପୁରୁଷ ସମାନ ଭାବେ ଅଙ୍ଗୀକୃତ ହେବା ପାଇଁ ଯେଉଁ ଆହ୍ୱାନ ଦେଇଥିଲେ ତା'ର ସାମାଜିକ ପ୍ରସଙ୍ଗ ସତେ ବା ପ୍ରଚ୍ଛନ୍ନ ଥିଲା ହଜିଲା ଦିନ ସବୁରେ । ସଂଗ୍ରାମ ପାଇଁ ବ୍ୟକ୍ତିକ ସୁଖ ସମର୍ପଣ କରିବା ବ୍ୟତୀତ ପରାଧୀନ ସମୟ ଆଉ ବା କ'ଣ ଦାବି କରିପାରେ ?...

ପୁଷ୍ପ –ଦୀପାଳି ନିଭିଲା କି ସଖି ? ବାରୁଦ ବାସନା ଆସୁଚି !
ଅନ୍ତର ତଳ କୂଜନ ନୋହେଲୋ, କମାଣ ଶବଦେ କାଶୁଚି,
ଫୁଟିଥିଲା ଯେଉଁ ସ୍ନିଗ୍ଧ ଗୋଲାପ ସୁନ୍ଦର ଶିଶୁ ଆନନେ,
ପ୍ରାନ୍ତରେ ସେ ତ ମାଂସ-ଶଇଳ ବିଗଳିତ ଶବ କାନନେ ।
ସଖିରେ ଚିତ୍ତ ଥରଇ ।
ଦୁଃଖ ନିବିଡ଼ କ୍ଷୁଦ୍ର ପୀରତି ହରଇ ।

ଚଉପାଶେ ଯେବେ ମୃତ୍ୟୁ ଅନଳ ଜଳିଚି
କେଉଁ ବଧୂଳିର ଅଧର ମଧୁ କେ କଳିଚି ?
ଚଉପାଶେ ଯେବେ ଚୋହ ପରି ପ୍ରିୟା
ମୋହ ପରି ପ୍ରିୟ ପ୍ରଣୟୀ
ଦୈତ୍ୟ କୁଳର ଶଲ୍ୟ-କୁଠାରେ
ଶମଶାନ ଶେଯ ମଣଇ ।
ସୁର ସେ ଲାସ୍ୟ ଚୟନେ
ବିଳସିବା କହ କେସନେ ଆଜି ଗୋ
ପ୍ରୀତି– ଅଳସିତ– ଆୟନେ ?
ସକଳ ଗଲେ ଗୋ ଯୁଗଳ କି ଆମେ ରହିବା ?
ଧ୍ୱଂସର ତଳେ ପ୍ରୀତିର କମଳ ବୋହିବା ?
ଆମ ଲାଗି ଖାଲି ହସିବ କି ମଧୁ ରଜନୀ,
ଖଞ୍ଜନ ଖେଳେ ବାଜିବ ଜୀବନ– ଖଜନି ?

ସଖିଲୋ ! ଶ୍ରବଣୁଁ ଫିଙ୍ଗତୋ ଫୁଲ କଳିକା !
ନୁହ ତୁହି ଆଉ ପ୍ରଣୟିନୀ ପୁର ବାଳିକା !
ଖୋଲି ଦେ ତୋହର ସ୍ୱର୍ଣ୍ଣ ଭୂଷଣ, ରୂପସି !
ସାଞ୍ଜୁରେ ଶୋହେ ଶାନ୍ତିର ରଣେ ଝଲସି ।

କୋଟି ନରନାରୀ, ଆର୍ତ୍ତ, ପୀଡ଼ିତ ଜନତା–
ଡାକେ ହାତ ଠାରି – ''ତେଜି ଆସ ଛୋଟ ମମତା ।''
ସଖି !
କୋଟି କୋଟି ଲାଗି ଆସ ଗୋ ଜିଣିବା ମରଣ
ଜୀବନରେ ନୂଆଇଁ ଶାନ୍ତିର ସୁଖ ସପନ !

ଛଳନାମୁକ୍ତ ଭାବେ ଦୁଃଖଦୁର୍ଦ୍ଦଶାର ମୀମାଂସା କରିବା ପାଇଁ କବି ଅନନ୍ତ ପଟ୍ଟନାୟକ ସମାଜର ସବୁ ଲୋକଙ୍କୁ ଏକାଠି କରିବା ଭଳି କବିତାର ବିବିଧ ପଂକ୍ତିରେ ପ୍ରକାଶ୍ୟ ବା ଉହ୍ୟ ରଖିଥିଲେ ହାର୍ଦ୍ଦିକ ଆବେଦନ । ଏହା ତାଙ୍କର ଅନ୍ୟତମ ବଳିଷ୍ଠ କାବ୍ୟ ବିଭାବ । ବନ୍ୟାପୀଡ଼ିତ ପୁରୀ ଜିଲ୍ଲାର ତ୍ରାଣ ଓ ସାହାଯ୍ୟ ବିତରଣ ପାଇଁ ସ୍ନାତକ ଶିକ୍ଷାର୍ଥୀ ଥିବାବେଳେ ସେ ଯେଉଁ ମର୍ମନ୍ତୁଦ ଅନୁଭୂତିରେ ବ୍ୟଥିତ ତା'ର ଅଶ୍ରୁଳ ଚିତ୍ର ରହିଛି 'ପାଣିର ପର୍ବତ ତଳେ':

ଆଜି କି ଦେଖୁନ ତୁମେ ନିଶ୍ଚିହ୍ନ କୁଟୀରେ
            ଭିକ୍ଷାଶିନୀ ଜନନୀର ନିର୍ବାକ ନୟନେ
                        ''କାହିଁଗଲୁ ଧନ,
ଜୀବନର ଯେତେ ଧେନୁ ବାହୁଡ଼ିଲେ ଘରେ
ତୁ କି ସତେ ଭାସିଗଲୁ ଅଦୃଶ୍ୟ ରାଇଜେ
                        ଅମର୍ତ୍ତ୍ୟ ସ୍ୱପନ !''
କେତେ ଉଷ୍ଣ ପରିହାସେ ବିଲୋଳ ପ୍ରୟାସେ
                        ସରାଗ ଚୁମ୍ବନେ କେତେ ସରମେ ଆଉଟି
                        କେତେ ଅଭିସାରିକାର କନକ ବାହୁଟୀ
                                    ପଡ଼ିଥିଲା ଖସି,
ମୃତ୍ତିକାର ଜୟରୋଳେ ଦେଖୁନ କି ସାଥି !
ପରାଜିତ ମୃତ୍ୟୁ ଏଇ ଫେରାଇଛି ହସି ।

ବନ୍ଧୁ ମୋର, ସାଥି ମୋର, ଅଖ୍ୟାତ ଅନାମୀ !
ଅନା ଅନା ବାରେ
ସଭ୍ୟତାର ଦରବାରେ
ଦୁଃଖର ଆସାମୀ !
ମରିନାହଁ ମରିନାହଁ, ତୁମ ହାହାକାରେ !

ଅନୁରୂପ ଭାବେ, ସେ 'କାର୍ତ୍ତିକ ବର୍ଷା'ରେ ଦୁଃଖାନ୍ତକ ଅନୁଭୂତିର ବାସ୍ତବ ବର୍ଣ୍ଣନା ଦେଇଛନ୍ତି ଗ୍ରାମ୍ୟ ପରିବେଶରେ । ପରିଣତ କବି ମାନସରେ ଶୈଶବର ଅନ୍ୱେଷା ଓ ଅଙ୍ଗୀକାର ତୀକ୍ଷ୍ଣ ରୂପ ନେଇଛି । ବକ୍ତବ୍ୟ ଶାଣିତ ହୋଇଛି :

ଆଜି କାର୍ତ୍ତିକେ
ଆସିଗଲା କାହୁଁ ବରଷା
ଏ କାଳ ବରଷାରେ ।
ଭସାଇ ଭସାଇ ପ୍ରୀତି ଶସ୍ୟର ଭରସାରେ !
ବହେ ସନ ସନ ନିଃଶ୍ୱାସ
ଘନ ନିଃଶ୍ୱାସ
ନଏଁ ଛନ ଛନ ଶଙ୍କାରେ
ମନ ବିଶ୍ୱାସ ।
କେତେ ତୋଟା ତଳ ମର୍ମ-ଚାହାଣୀ
କେତେ ନୂପୁରର ନର୍ମ-କାହାଣୀ
ହେମାଳ ନୃତ୍ୟେ ବୁଡ଼ାଇ
କେଉଁ ଫଣିନୀର ବିଦ୍ୟୁତ–ତନୁ
କଣ୍ଟର ତଟେ ଗୁଡ଼ାଇ

ଉଡ଼ାଇ ଉଡ଼ାଇ
ପୁଷ୍ପିତା ବଧୂ ଦୁକୂଳ ଦେହୁଁ ତା'
ଦାମ୍ଭିକ କର-ଧରଷାରେ
ଆଜି କାର୍ତ୍ତିକେ ଆସିଗଲା କାହୁଁ ବରଷା
ଏ କାଳ ବରଷାରେ ।

ଭାସିଯାଏ ସତେ ! ସ୍ୱପ୍ନର ନୀଳ କିଆରୀ
ଆଜି ଭାସିଯାଏ ଯେତେ ଚିର କାନନେ
ମୃଦୁ ସଂଗୀତ—ସିଆରୀ
କେତେ ରୁଦ୍ଧ ରୋଦନେ କେନ୍ଦରୀ ସୁରେ ତିଆରି !
ଲୋଟିଯାଏ କେତେ ଛିନ୍ନ କବରୀ
କୃଷ୍ଣ ଏ ନଭ ଦେହରେ
ସଖି ! ଢଳି ଯିବନିକି ତୃଷ୍ଣା ତୁରଗ
ପ୍ରଳୟ ଆର୍ତ୍ତି ଲେହରେ ?
କାହିଁ ପୁଆଡିର କାନ୍ଦଣା ଶୁଭେ, ପ୍ରିୟା ଗୋ
ଆଜି ଅତୀତର ପ୍ରେତ ଚିତ୍କାରେ ଖର ପବନେ,
ପୀତ ବାଲିଚରେ ଶିଶୁ କବିତାର ହିଆ ଗୋ
ଏ କି କୁତ୍ସିତ କାଳ-ଦମ୍ଭୋଳି ବାଜେ ଶ୍ରବଣେ !
ଗଡ଼ି ଗଡ଼ି ଯାଏ କରୋଟି କାହାର
ଲୁହ ବନ୍ୟାର ତରସାରେ
ଆଜି କାର୍ତ୍ତିକେ ଆସିଗଲା କାହୁଁ ବରଷା
ଏ କାଳ ବରଷାରେ !

୧୯୩୫ରେ ଅନନ୍ତ ପଟ୍ଟନାୟକ ଯେତେବେଳେ ରେଭେନ୍‌ସା କଲେଜରୁ ସ୍ନାତକ ଉପାଧି ହାସଲ କଲେ ସେ 'ନବଯୁଗ ସାହିତ୍ୟ ସଂସଦ' ଗଠନ ସମେତ ସାରସ୍ୱତ ସେବାରେ ମନୋନିବେଶ କଲେ । ସେ ସଂସଦର ସଂପାଦକ ରୂପେ ଦାୟିତ୍ୱ ନିର୍ବାହ କରିଥିଲେ । ଅନନ୍ତ ପଟ୍ଟନାୟକ ଓ ତାଙ୍କର ସତୀର୍ଥ ସଚ୍ଚି ରାଉତରାୟ ସାମାଜିକ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦେଉଥିବା ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ନୂଆ ପିଢ଼ିର ମନୀଷୀମାନଙ୍କ କୃତି ଅନୁଶୀଳନରେ ନିଷ୍ଠାର ସହିତ ମନୋନିବେଶ କଲେ । ଇଂରାଜୀ ସାହିତ୍ୟର ପ୍ରଗତିଶୀଳ ଧାରା ସଂପର୍କରେ ସେମାନେ ଯଥେଷ୍ଟ ସଚେତନ ଥିଲେ । ଅଡେନ୍, ସ୍ପେଣ୍ଡର ଏବଂ ଲୁଇ ମେକ୍‌ସସ୍‌ଙ୍କ ରଚନାବଳୀ ସେମାନଙ୍କ ହୃଦୟରେ ରେଖାପାତ କଲା । ଫାସିବାଦ ବା ସାମୂହିକ ଆତଙ୍କବାଦ ଏବଂ ବ୍ୟକ୍ତି ସ୍ୱାଧୀନତା ପ୍ରତି ଶଙ୍କା ସାମାଜିକ ମୂଲ୍ୟବୋଧର କିପରି ଅବକ୍ଷୟ କରେ ସେମାନେ ନିଜ ନିଜର ସାହିତ୍ୟ ସୃଷ୍ଟିରେ ସେ ସବୁର ନଜିର ବାଢ଼ିଥିଲେ । ରୋମାଣ୍ଟିସିଜମ୍‌ର ଅନୁଶୀଳନ କରି ଆଧୁନିକ ସଭ୍ୟତା ଉପରେ ଯୁଦ୍ଧୋତ୍ତର ପ୍ରଭାବ ଦକ୍ଷଭାବେ ସେମାନେ ନିର୍ଣ୍ଣୟ କରିଥିଲେ ।

ଶ୍ରମଶକ୍ତିର ସ୍ୱାର୍ଥ ରହିତ ଅବଦାନ ଅନ୍ଧ ମସୁଧାରେ ଅବହେଳିତ ହେବାର ଆସନ୍ନ ବିପଦରେ ସେମାନଙ୍କ ଲେଖନୀ ଶିହରିତ ହୋଇଥିଲା । ତେଣୁ ସ୍ୱାଧୀନତା ସଂଗ୍ରାମର ସୁଫଳ ଯେପରି ଅବହେଳିତ ନ ହୁଏ ସେଥିପ୍ରତି ସେମାନେ ଜାଗ୍ରତ ହେଲେ; ନିର୍ଦ୍ଦିଷ୍ଟ ଆଦର୍ଶର ଅନୁସରଣ କଲେ ଏବଂ ଭାବୀ ବଂଶଧରଙ୍କୁ ଦିଗ୍‌ଦର୍ଶନ ଦେଲେ । କ୍ଷୁଧା, ରୁଗ୍‌ଣତା ଏବଂ କୁସଂସ୍କାର ବିରୁଦ୍ଧରେ ନରନାରୀ ଐକ୍ୟବଦ୍ଧ ଛନ୍ଦରେ ଅଗେଇ ଯିବା ପାଇଁ ସେମାନେ ଆହ୍ୱାନ ଦେଲେ ।

ପ୍ରଥିତଯଶା ଔପନ୍ୟାସିକ ପ୍ରେମଚାନ୍ଦ ୧୯୩୬ରେ ଲକ୍ଷ୍ନୌରେ ଅନୁଷ୍ଠିତ ପ୍ରଗତିଶୀଳ ଲେଖକ ସମ୍ମେଳନରେ ଉଦ୍‌ବୋଧନ ଦେଇ ସାହିତ୍ୟିକ ପରମ୍ପରା ସାମାଜିକ ସଂକଟ୍ଟ ପୂରଣ କରିବା ଦିଗରେ ବ୍ରତୀ ହେବା ଉଚିତ ବୋଲି ମତବ୍ୟକ୍ତ କରିଥିଲେ । ସତ୍ୟବାଦୀ ଯୁଗର ଚିନ୍ତାଧାରା ଜାତି-ଇତିହାସ ଓ ସଂସ୍କୃତିରୁ ଜାତିର ନିର୍ଝର ଅଭିହିତ କରିଥିବାରୁ ବୈକୁଣ୍ଠନାଥ ପଟ୍ଟନାୟକ ଓ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ପରି ଖ୍ୟାତନାମା କବି ସାମାଜିକ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ଦେଶଭକ୍ତି ସହିତ କେବେ କେବେ ସେମାନେ ରୋମାଣ୍ଟିକ୍ ଭାବଧାରାକୁ ସମନ୍ୱିତ କରିଥିଲେ । ସମୟର ପରିବର୍ତ୍ତିତ ପରିପ୍ରେକ୍ଷୀରେ ଅଧିକ ସଂହତି ଏବଂ ପ୍ରଭାବଶାଳୀ ଆଧୁନିକ ଚିନ୍ତାର ଆବଶ୍ୟକତା ଅନନ୍ତ ପଟ୍ଟନାୟକ ଏବଂ ସଚ୍ଚିରାଉତରାୟଙ୍କ କାବ୍ୟମାନସରେ ସ୍ପଷ୍ଟ ହେଲା । ଉଭୟେ, ରାଧାମୋହନ ଗଡ଼ନାୟକ ଏବଂ ମାୟାଧର ମାନସିଂହଙ୍କ ଅନନୁରୂପ, ଗଣ ଆବେଦନ ଥିବା ବିଷୟବସ୍ତୁଗୁଡ଼ିକୁ ଆପେକ୍ଷିକଭାବେ ଆଧୁନିକ ଶୈଳୀରେ ବ୍ୟକ୍ତ କରିବା ଦିଗରେ ପରୀକ୍ଷା ନିରୀକ୍ଷା କରିଥିଲେ । ନୂତନ ବିଶ୍ୱର ପ୍ରଗତିବାଦୀ ସ୍ରଷ୍ଟା ରୂପେ ନିଜର ଭୂମିକା ପ୍ରତିପାଦିତ କରିଥିଲେ । ଆଧୁନିକ କବିତାର ସମାଲୋଚନା ତଥା ଗଠନ ତତ୍ତ୍ୱ ସଂପର୍କରେ ସେମାନଙ୍କର ଯଥେଷ୍ଟ ଜ୍ଞାନ ଥିବାରୁ ଉଦ୍ଦାମ ଆବେଦନ, ଶିଳ୍ପୀ ସୁଲଭ ବିସ୍ମୟ ଏବଂ ଉଚ୍ଚକିତ ଅଭିବ୍ୟକ୍ତି ଦ୍ୱାରା ପାଠକବର୍ଗଙ୍କୁ ସେମାନଙ୍କ ସୃଷ୍ଟିର ମୂଲ୍ୟାୟନ ପାଇଁ ପ୍ରୋତ୍ସାହିତ କରୁଥିଲେ । ଜାତୀୟ ଅଭିବୃଷ୍ଟି ସଂପନ୍ନ ହେବା ପାଇଁ ସେମାନଙ୍କୁ ଖୋରାକ ଯୋଗାଉଥିଲେ ।

ଅନନ୍ତ ପଟ୍ଟନାୟକ ଏବଂ ସଚ୍ଚି ରାଉତରାୟଙ୍କ ଯୁଗ୍ମସ୍ୱାକ୍ଷର ସମ୍ୱଳିତ 'ରକ୍ତଶିଖା'ରେ ବିଦେଶୀ ନିର୍ଯ୍ୟାତନାର ମର୍ମଦାହୀ ବୃତ୍ତାନ୍ତ ଉପସ୍ଥାପିତ ହୋଇଛି । ପଳାୟନବାଦୀ ମନୋବୃତ୍ତି ପରିହାର କରିବା ପାଇଁ ପାଠକବର୍ଗଙ୍କୁ ସେମାନେ ସତର୍କ କରାଇଥିଲେ । ମାଇକୋଭସ୍କି, ଗର୍କୀ ଏବଂ ଟଲଷ୍ଟୟଙ୍କ ପଦାଙ୍କ ଅନୁସରଣ କରି ନିର୍ଯ୍ୟାତନାର ମୁକାବିଲା କରିବା ପାଇଁ ଜନଗଣଙ୍କୁ ସଚେତନ କରିଥିଲେ ।

ଜ୍ଞାନପୀଠ ବିଜେତା ଗୋପୀନାଥ ମହାନ୍ତି 'ଅନନ୍ତ ବିଚିତ୍ରା' (କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ୧୯୯୧)ର ମୁଖବନ୍ଧରେ ସ୍ମୃତିଚାରଣ କରିଛନ୍ତି ହଜିଲା ସଂପର୍କର:

''ଅ'ନ୍ତ ବୟସରେ ଅବଶ୍ୟ ଟିକିଏ ବଡ଼ ମୋ'ଠୁ । କିନ୍ତୁ ଇସ୍କୁଲ୍‌ରେ ଆମେ ଏକା ସମୟରେ । ସେ ବି ୧୯୩୦ରେ ମ୍ୟାଟ୍ରିକ୍ୟୁଲେଶନ୍ ପାଶ୍ କଲା । ଏକା କ୍ଲାସର । ତଫାତ୍ ଏତିକି, ମୁଁ ପାଟଣା ହାଇସ୍କୁଲ୍ ଛାତ୍ର-ବିହାରର, ସିଏ ପୁରୀ ଜିଲ୍ଲା ସ୍କୁଲର ।''

''ଅଭିଜାତ ସାମନ୍ତ ବଂଶ । ଚାରି ପୁରୁଷର କବି । ଜେଜେ (ହରେକୃଷ୍ଣ) ଥିଲେ କବି । ଦାଦି ଥିଲେ ମୁରଲୀଧର ରାୟ ଚଉଧୁରୀ, ବନ୍ଦେ ମାତରଂ ମୁଭ୍‌ମେଣ୍ଟରେ, ବୋମା ଫିଙ୍ଗିଲାବାଲା । ନାଁ ବଦଳେଇ । ସେ ଓଡ଼ିଶାର ସ୍ୱନାମଧନ୍ୟ କୃଷ୍ଣମୋହନ ପଟ୍ଟନାୟକ । ସେ ଫେରିଲେ । ଶ୍ରୀ ଅରବିନ୍ଦଙ୍କ ନିର୍ଦ୍ଦେଶରେ ସେଠି କାମ କରୁଥିଲେ । ପୁଣି ତାଙ୍କ ନିର୍ଦ୍ଦେଶରେ ଫେରିଲେ । କାରଣ ଆମର ବାଳକୃଷ୍ଣ ଦାଦି । ବାଳକୃଷ୍ଣ ପଟ୍ଟନାୟକ, ମଧୁବାବୁ ତାଙ୍କୁ ପଠାଇଥିଲେ କୃଷ୍ଣମୋହନବାବୁଙ୍କୁ ଧରି ଆଣିବାକୁ । ତା'ପରେ ସେ ଚଣାହଟ୍ଟାରେ ଗୋଟିଏ ପରିବର୍ତ୍ତନ ଆଣିଲେ । ସେ କାଳରେ ଯେତେବେଳେ ଚାରିଆଡ଼େ ସମସ୍ତେ ଥିଲେ ମରହଟ୍ଟି, ଅର୍ଥାତ୍ ଚଣାହଟ୍ଟା ଆଧୁନିକ ହେଲା । ଝିଅମାନେ ପଦାକୁ ବାହାରିଲେ ।'' x x

''ସେ ଅଞ୍ଚଳ ହେଉଛି କବି ଜୟଦେବଙ୍କ ଅଞ୍ଚଳ । ଚଣାହଟ୍ଟାରୁ ନାକ ସଳଖା ଆମେ ଯଦି ସାତ ମାଇଲ ଯିବା, ଆମେ ପହଞ୍ଚିବା କବି ଜୟଦେବଙ୍କ କେନ୍ଦୁଲୀ ଦେଉଳିରେ । ସେଇଠି ଗାଁ ଗାଁକେ ଖୁନ୍ଦି ହୋଇ ରହିଛି ପ୍ରାଚୀନ ସଂସ୍କୃତି । ଅପୂର୍ବ ଅଞ୍ଚଳ ।'' x x

''ସେ ସମୟ ତ ଅପୂର୍ବ ସମୟ । ଗାନ୍ଧିବାଦ, ତା' ସହିତ ମହାନ୍ ମାର୍କସ୍, ମହାନ୍ ଲେନିନ୍– ଏ ଦୁଇ ବାଦର ପ୍ରଭାବ ପଡୁଥିଲା ସେତେବେଳର ଯୁବକମାନଙ୍କ ଉପରେ । ୧୯୧୭ର ରୁଷ୍ ବିପ୍ଳବ । ଆଶା ଖୋଲି ଦେଇଥିଲା ଏ ଦୁନିଆଯାକର ଯେତେ ଖଟିଖିଆ, ଯେତେ ଅତ୍ୟାଚାରିତ– ସମସ୍ତଙ୍କ ଉପରେ । ଯୁବକମାନଙ୍କ ଭିତରେ ଯେଉଁମାନେ ବେଶୀ ସ୍ୱର୍ଶ ପ୍ରବଣ ଥିଲେ, ସେମାନେ ଏ ନିଆଁରେ ଜଳି ଉଠିଥିଲେ । ତାଙ୍କରି ଭିତରେ ଅନ୍ୟତମ ଥିଲେ ଅନନ୍ତ ପଟ୍ଟନାୟକ ।''

''...ଆରମ୍ଭ ହେଲା ନବଯୁଗ ସାହିତ୍ୟ ସଂସଦ । ତା'ର ଉଦ୍‌ବୋଧନ ସଂଗୀତ ରଚନା କରିଥିଲା ଅନନ୍ତ । ଆଉ ତାକୁ ଗାଇଥିଲେ ମାଳତୀ ଚୌଧୁରୀ –''

''ନବୀନ ଯୁଗର ତରୁଣ, ଜାଗରେ
ଜାଗ ବନ୍ଧନ ହରା,

ବକ୍ଷ ଶୋଣିତେ ଲକ୍ଷ ଜୀବନେ

ଖେଳାଅ ଆଲୋକ ଧାରା ।''

ଓଡ଼ିଶାରେ ସାମ୍ୟବାଦୀ ଚେତନାର ମହାନ୍ ପ୍ରବର୍ତ୍ତକ ଥିଲେ ନବବାବୁ । ତାଙ୍କ ସହିତ ଥିଲେ ଭଗବତୀବାବୁ । ତା'ପରେ ଆହୁରି ଅନେକ । ଆଉ ଅନନ୍ତ କବି ହିସାବରେ ବହୁ ବର୍ଷ ପର୍ଯ୍ୟନ୍ତ କବିତା ଭିତରେ, ପ୍ରବନ୍ଧ ମାଧ୍ୟମରେ, ସଂପାଦକୀୟ ମାଧ୍ୟମରେ, ଅନ୍ୟାନ୍ୟ ଲେଖା ମାଧ୍ୟମରେ । ତା'ର ଥିଲା ଭାଷା ।

ସେ ନୂଆ ଚେତନାର ପୃଷ୍ଠଭୂମି କଥା କହେ । ସେତେବେଳେ ଯେଉଁ ପ୍ରକାର କବିତା ଲେଖା ଯାଉଥିଲା, ବେଶୀ ଭାଗ ଥିଲା ଜନଜୀବନଠାରୁ ଦୂର । ସମାଜ ଚେତନା ଓଡ଼ିଆ ସାହିତ୍ୟକୁ ନୂଆ ନୁହେଁ; କି ସମାଜ ଚେତନା କେବଳ ଯେ 'ନବଯୁଗ' ଗୋଷ୍ଠୀ ସୃଷ୍ଟି ହେଲା ଦିନଠୁଁ ଓଡ଼ିଶାକୁ ଆସିଲା ତା' ନୁହେଁ । ତାକୁ ତ ମୁଁ ଦେଖୁଛି, ଆମର ଯେ ଆଦି ମହାକବି ସାରଳା ଦାସ, ତାଙ୍କ ତାଳପତ୍ର ପୋଥିରେ । ସେ ଦେଖାଇଛନ୍ତି ଯେ ସାଧାରଣଙ୍କ ଉପରେ କେହି ନାହିଁ । ସାଧାରଣ ସ୍ତରକୁ ନ ଆସିଲେ ମଣିଷ ମଣିଷ ପଦବାଚ୍ୟ ହୁଏ ନାହିଁ । ଆମ ଧର୍ମରେ ବି ସେଇ ଚିହ୍ନ । ଶ୍ରୀଜଗନ୍ନାଥଙ୍କ ମୁଣ୍ଡ ଉପରେ ଆଗ ଥୁଆ ହୁଏ ଦୁବଘାସ, ଆଉ ଓଡ଼ିଶାର ରାଜା ଚାଣ୍ଡାଳ ସ୍ତରକୁ ଓହ୍ଲାଇ ଯା'ନ୍ତି ତାଙ୍କ ସେବା କଲାବେଳେ । ଦେଖାଇ ଦିଅନ୍ତି ଯେ, ଏ ସାଧାରଣ ବ୍ୟକ୍ତି, ଏହି ପ୍ରଧାନ । ଯେ ଯେତେ ବଡ଼ ହୋଇଥାଉ ସେ ତାଙ୍କରି ସେବକ । ତା'ପରେ ତ କେତେ କାଳ ବିତିଗଲା ଦେଶର ନାନା ସୁବିଧା ଅସୁବିଧାର ବେଳ, ଯେତେବେଳେ ଇତିହାସ କ୍ରମରେ ଓଡ଼ିଆ ଜାତି– ଚାରିଆଡ଼େ ଦିଶିଲା ଖାଲି ଅନ୍ଧାର । ଯେତେବେଳେ ଭାବିଲା ନିଜ ଶକ୍ତିରେ କିଛି କରିପାରୁ ନାହିଁ, କି ପାରିବ ନାହିଁ, ସେତେବେଳେ ନିରାଶ୍ରୟ ହୋଇ ସେ ଭାଗ୍ୟକୁ ଆବୋରିଲା, ଭଗବାନଙ୍କୁ ଡରିଲା । ସେଥିରେ ଶାନ୍ତି ପାଇଲା । ତା' ପରେ ପୁଣି ଚାଲିଲା । ସମୟ ଆସିଲା ଯେତେବେଳେ ସାମନ୍ତବାଦୀ ସମାଜ ଏତେ ପ୍ରବଳ ହୋଇ ଉଠିଲା ଯେ, ବିଳାସ କରୁଥିଲା ରାଜା ସାମନ୍ତମାନେ ଯେଉଁ ପ୍ରକାର ସାହିତ୍ୟକୁ ଉପଭୋଗ କରିବେ, ମାଣିରେ ଆଉଛି; ମଣିଷର ଦୁଃଖ ଦୁର୍ଦ୍ଦଶା ଗାଧୋଇ ଯାଉ; ଶବ୍ଦ ଜାଲ କେମିତି ଚିକ୍‌କଣ କରି ବିଛାଇ ଯାଇ ପାରୁଚି । ଶବ୍ଦକୁ କିପରି ସୁନ୍ଦର କରି ପାଲିସ୍ କରାଯାଇ ପାରୁଚି... ଏଇ ସବୁଥିରେ ସେମାନେ ମାତିଥିଲେ । ସମୟ ଆସିଲା, ରବୀନ୍ଦ୍ରନାଥ ନୋବେଲ୍ ପୁରସ୍କାର ପାଇଲେ । ରବୀନ୍ଦ୍ରନାଥ ତ ମହାନ୍ । ଜୀବନର ସବୁ ଦିଗ ସ୍ପର୍ଶ କରିଛନ୍ତି । କିନ୍ତୁ ତାଙ୍କ ଯେଉଁ ରୋମାଣ୍ଟିକ୍ କବିତା, ଆକାଶୀ କବିତା, ସେଇ ପ୍ରକାର କବିତାମାନ ଓଡ଼ିଶାରେ ରଚିତ ହେଲା । ବଙ୍ଗଭାଷା ଓଡ଼ିଆ ଭାଷାକୁ ପ୍ରଭାବିତ କଲା । ଭାସିଲେ ଥୋଡ଼େ ସେବାଟେ ।

ସାର କଥା ହେଲା ୧୯୩୦/୩୨, ଏଇ ସମୟ ବେଳକୁ ସାଧାରଣତଃ କବିତା, ସାଧାରଣ ଜନ ଜୀବନଠାରୁ ଦୂରେଇଗଲା । ଚିତ୍ର କଲା ଆଉ କିଛି ।

''(ହଁ !) ଏଇ ସମୟରେ ଯୋଡ଼ିଏ ଧାରା ଏଇ ମାଟିକୁ ଆସିଥାଏ । ଗୋଟିଏ ତ ମହାତ୍ମାଜୀଙ୍କ ଗାନ୍ଧିବାଦ୍, ସତ୍ୟ ଅହିଂସା ଇତ୍ୟାଦି ଓ ତା' ଉହାଡ଼ରେ ତାଙ୍କ ବିରାଟ ମାନବବାଦ । କିନ୍ତୁ ମଳି ମୁଣ୍ଡିଆଙ୍କ ଭିତରେ ଯେ ହତାଶା ଆଉ ଆକ୍ରୋଶ । ତାଙ୍କ ଭିତରେ ଯୋଉ ଅହଙ୍କାର ନିଆଁ ଜଳୁଛି, ତାଙ୍କ ତତଲା ନିଃଶ୍ୱାସ ଓ ତାକୁ ବାଟ ଦେବା, ତାକୁ ଧରି ଗୋଟିଏ ନୂଆ ବାଟ ଖୋଜିବା । ଏ କଥା ଆସିଲା ମାର୍କସ୍ ଲେନିନ୍– ଏଇମାନଙ୍କଠୁ । ୧୯୩୦-୩୨ପରେ, ଏଇ ସମୟରେ ମାର୍କସ୍‌ଙ୍କ ଦର୍ଶନ । ମାର୍କସିଷ୍ଟ ସାହିତ୍ୟ ଧୀରେ ଧୀରେ ଏଠି ବେଶି ବେଶି ଆଲୋକିତ ହେବାକୁ ଲାଗିଲା । ସେଇ ଆଲୋଚନାକୁ ଜାଣତାରେ ଦୂରକୁ ଦୂରକୁ ବିଛେଇ ଦେବା– ଏ କାର୍ଯ୍ୟ କରୁଥିଲେ ନବବାବୁ, ଭଗବତୀବାବୁ ଓ ଠିକ୍ ସେମାନଙ୍କ ପଛେ ପଛେ ଗୁରୁଚରଣବାବୁ । x x''

''... ସେହି ସମୟରେ ସାହିତ୍ୟ ଗୋଟିଏ ନୂଆ ମୋଡ଼ ନେଲା । ସେମାନେ ଆଙ୍ଗୁଠି ଦେଖେଇ ବୁଝାଇଲେ ଯେ, ଆମେ ଆମର ବାସ୍ତବ ଜୀବନ, ଆମ ଲୋକଙ୍କ ସମସ୍ୟା, ତାଙ୍କ ଦୁଃଖଦୁର୍ଦ୍ଦଶା- ଯାରି କଥା କହିବୁ । x x''

ଅନନ୍ତ ପଟ୍ଟନାୟକ ନିଜେ ଗୋଟେ ସ୍ପାର୍ଟାକସ୍ । ଅଚ୍ଛି ଆପଣା ବିଷୟରେ ଯାର ଗୋଟାଏ କୌଣସି ବଡ଼ ଲୋକି ଧାରଣା ନାହିଁ, ଗଉଁ ନାହିଁ । ଗଉଁ ନାହିଁ ସତ । ତା' ବୋଲି କବି ହିସାବରେ, ତା' ନିଜର ଦମ୍ଭ ନାହିଁ କି ! ତା'ର ଯୋଉ କବିତା ଆଜି ପାହାଡ଼ ଥରାଇ ଦିଏ, ଗଡ଼ଜାତ ଆନ୍ଦୋଳନରେ ଯେ ଦୁଲୁକେଇ ଥିଲା, ସ୍ୱାଧୀନତା ବେଳେ ତା'ର କ୍ଷୋଭ କବିତା ଦୁଲୁକେଇ ଥିଲା, ତା' ଭିତରେ ତ ବଜ୍ରର ଶକ୍ତି ରହିଛି ।''

୧୯୩୬ରେ ଅନନ୍ତ ପଟ୍ଟନାୟକ 'ଆଧୁନିକ' ସଂପାଦନା, ପ୍ରକାଶନ ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ । ନବଯୁଗ ସାହିତ୍ୟ ସଂସଦର ଏଇ ମୁଖପତ୍ର ତାଙ୍କର ଓ ତାଙ୍କ ବନ୍ଧୁମାନଙ୍କ ସାହିତ୍ୟ କୃତିରେ ପୁଷ୍ଟ ହୋଇଥିଲା । 'ଗୋଟିଏ ଘଟଣା' ଶୀର୍ଷକ କ୍ଷୁଦ୍ର ପ୍ରବନ୍ଧରେ ଅନନ୍ତ ସଂପାଦନାର ଖିଏ ସ୍ମୃତି ଗୁନ୍ଥିଛନ୍ତି । ଭଗବତୀବାବୁ ଏକ ଚୈତ୍ର ଦିନରେ ଗପଟିଏ ଧରି ତାଙ୍କ ପାଖରେ ପହଞ୍ଚିଲେ– କହିଲେ :

''ଗପ ମିଳୁ ନାହିଁ, ମିଳିବ ନାହିଁ– ଆଧୁନିକ ପାଇଁ ଡାକ ଦେଉଚ–

'ଦିଅ ମୋତେ'–

ନା, ନା, ମୁଁ ପଢୁଛି ଶୁଣ–

ଗପଟା ପଢ଼ା ଆରମ୍ଭ କଲେ ସେ – ଆମ ଚାରିପଟେ ଘାଉଁରି ଖାଉଥାଏ
ଚଉତାଳିର ଝଡ଼ି ଝଡ଼ିକା, ରହି ରହିକା ପାଚିଲା ଆମ୍ବପତ୍ର–
ପଢ଼ା ସରିବା ଉପରେ । ଅନୁଭବରେ ଆସିଲା, ଫୋଡ଼ି ଫୋଡ଼ି ହୋଇ ଯାଉଛି ଗୁଗୁଚିଆ ।
ସତେ ଅବା ବାସ୍ତବତାର କଳ୍ପନାରେ କେମିତି ଲାଗିଲା ? ତମ ମତାମତଟା ।
ଉତ୍ତରରେ ଦେଖେ କହିବି – କାଗଜ କେଇ ଖଣ୍ଡି ଏକ ପ୍ରକାର ଛଡେଇ ଆଣିଲି
ତାଙ୍କ ହାତରୁ । ଜାଣିଥାଏ ଯଦି କହିଥାନ୍ତି, ହେଲା ଯେ ତଥାପି – କିବା ମୁହଁ
ଟିକିଏ ବଙ୍କେଇ ଦେଇଥାନ୍ତି । ଚିରି ଟିକି ଟିକି କରି ଦେଇଥାନ୍ତେ ସେ କାଗଜଟିକୁ ।

ସୃଜନଶୀଳ ପ୍ରତିଭାର ସ୍ପର୍ଶାତୁରତା ଥିଲା ତାଙ୍କଠି, ପ୍ରବନ୍ଧ ରଚନାରେ କି ସାମ୍ବାଦିକ ଲେଖାରେ ଦୃଢ଼ ରହିଥାନ୍ତେ ସେ; କିନ୍ତୁ ନିଜ ସୃଷ୍ଟିର ସାମାନ୍ୟ ଦୋଷ ସୂଚେଇ ଦିଏ, ଧୈର୍ଯ୍ୟ ଧରି ପାରି ନ ଥାନ୍ତେ ଆଦଉଁ ।

ପଚାରିଲି ଗପର ନାଁ ?

''ତମେ ଦିଅ ।''

'ମୁଁ କ'ଣ ଗପର ମାମୁ, ତା'ପରେ ଠିକ୍ ହେଲା ଗପର ନାଁ 'ଶିକାର' ।

କହିଲି ଚମତ୍କାର ହୋଇଛି ଗପ, ବାସ୍ତବତାର ପଥ ଫିଟାଇଦିଏ । ଏ ପର୍ଯ୍ୟନ୍ତ ସବୁ ଗପ ଥିଲା କଳ୍ପନାଶ୍ରୟୀ ।''

'ଆଧୁନିକ' ପ୍ରକାଶିତ ହେଉଥିବା ବେଳେ ସାହିତ୍ୟର ଆଭିମୁଖ୍ୟ ସଂପର୍କରେ ଅନେକ ପ୍ରସଙ୍ଗ ଆଲୋଚିତ ହେଉଥିଲା ବନ୍ଧୁମାନଙ୍କ ମଧ୍ୟରେ । ସାମାଜିକ ବାସ୍ତବବାଦକୁ ଉତ୍ସାହିତ କରିବା ପାଇଁ ପୂର୍ବ ପିଢ଼ିର ରହସ୍ୟବାଦରୁ ଘୁଞ୍ଚି ଯିବାକୁ ତରୁଣଗୋଷ୍ଠୀ ପସନ୍ଦ କରୁଥିଲେ । 'ସାହିତ୍ୟରେ ଶ୍ରେଣୀପରତା' ଆଲୋଚନାରେ ଅନନ୍ତ ପଟ୍ଟନାୟକ ସତ୍ୟବାନ୍ ଓ ସାହସୀ ମଣିଷର ଆଦର୍ଶ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ମାତ୍ର ଛଅଟି ସଂଖ୍ୟା 'ଆଧୁନିକ'ରେ ଗୋପୀନାଥ ମହାନ୍ତି ଓ ପ୍ରାଣବନ୍ଧୁ କରଙ୍କ ସମେତ ଅନେକ ମନୀଷୀ ଲେଖକଙ୍କ କୃତି ସ୍ଥାନ ପାଇଥିଲା ।

ଅନନ୍ତ ପଟ୍ଟନାୟକ ୧୯୩୬ କୃଷକ ଆନ୍ଦୋଳନ ସମେତ ଅନେକ ଗଣ ଆନ୍ଦୋଳନରେ ଭାଗ ନେଇଥିଲେ । ସେ ପ୍ରଥମ କୃଷକ ସଭା ସମ୍ମେଳନରେ ଯୋଗ ଦେଇଥିଲେ । ତାଙ୍କ ଉପସ୍ଥିତିରେ ସର୍ବଭାରତୀୟ ପ୍ରଗତିବାଦୀ ସାହିତ୍ୟ ସମ୍ମେଳନରେ ଓଡ଼ିଶା ଶାଖା ଗଠିତ ହୋଇଥିଲା । ରାଜନୈତିକ ପୃଷ୍ଠପଟ୍ଟ ଅନୁଧ୍ୟାନ କରି ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ରୂପେ ଯୋଗଦେଇଥିଲେ । ଗୁରୁଚରଣ, ପ୍ରାଣନାଥ, ଭଗବତୀ ବିଶ୍ୱନାଥ ପଣାୟତ ଏବଂ ବୈଦ୍ୟନାଥ ରଥଙ୍କ ପଦାଙ୍କ ଅନୁସରଣ କରିଥିଲେ ଅନନ୍ତ ଚରଣ ।

# କାବ୍ୟ କୃତି : ଅଭିଦୃଷ୍ଟି

The poet's eye in a fine frenzy
rolling :

**– Shakespeare**

ଶେକ୍‌ସ୍‌ପିଅର କହିଥିଲେ, କବିର ଆଖି ସ୍ୱର୍ଗରୁ ମର୍ତ୍ତ୍ୟ ଯାଏଁ ଘୁରୁଥାଏ । ବାହ୍ୟ ଦୃଶ୍ୟ କବିତାରେ କିନ୍ତୁ କ୍ୱଚିତ୍ ବ୍ୟକ୍ତ ହୁଏ । ମଣିଷକୁ ଭଲଭାବେ ବୁଝୁଥିବା ହୃଦୟ ଯେଉଁ ଅନୁଚିନ୍ତାରେ ଶିହରିତ ହୁଏ ସେଥିରୁ ଇଙ୍ଗିତ ମିଳେ ଦାର୍ଶନିକତାର । ଯେତେ ଉହ୍ୟ ଥିଲେ ବି ଏହା ପ୍ରଜ୍ଞାର ଆଲୋକରେ ଧରାପଡ଼େ । ସାମାଜିକ ବିଚାରବୋଧ ବ୍ୟତୀତ କସ୍ମିନ୍ କାଳେ କବି କବିତା ଲେଖେ ନାହିଁ । ପ୍ରିୟତମା ପାଇଁ ହେଉ, କୌଣସି ବାଦବିପ୍ଳବ ପାଇଁ ହେଉ କବିତାର ପ୍ରକାଶ ଶୈଳୀ ମଧ୍ୟ ଆତ୍ମିକ ଅଭୀପ୍‌ସାକୁ ଚିହ୍ନାଇ ଦିଏ । ମୂଲ୍ୟବୋଧର ଅବକ୍ଷୟ ପାଇଁ ଆଜିର ମଣିଷ ବିବ୍ରତ ହେବା ସ୍ୱାଭାବିକ । ତଥାପି ଯୁଦ୍ଧୋତ୍ତର ପୃଥିବୀର ସମସ୍ୟାବଳୀ ପର୍ଯ୍ୟାଲୋଚନା କରି ସେ ସଂଜ୍ଞାଯୁକ୍ତ କରେ ନିଜ ସୃଜନର ଆଭିମୁଖ୍ୟ, ନିଜ ବୁଝାମଣାର ଇସ୍ତାହାର । ଅନନ୍ତଙ୍କ କବିତାରେ ରୀତି ଯୁଗୀୟ ଛନ୍ଦର କିଞ୍ଚିତ୍ ଲାଳିତ୍ୟ ବାରି ହୁଏ, ସବୁଜ ଯୁଗର ସମ୍ୟକ୍ ସୌନ୍ଦର୍ଯ୍ୟ ଗୁମ୍ଫନ ଝଲକ ଖେଳାଏ, ସତ୍ୟବାଦୀ ଯୁଗର ଐତିହାସିକ ଐତିହ୍ୟର ସୂଚନା ଧରାପଡ଼େ । କିନ୍ତୁ କେବେ ଦୁଇ ଚାରୋଟି ଶବ୍ଦରେ ଏ ସବୁ ସୀମିତ ରହି ନୂତନ ଅନ୍ୱେଷାରେ ପାଠକକୁ ଟାଣିନିଏ ବାସ୍ତବତା ଦିଗକୁ । ବହୁମୁଖୀ ବାସ୍ତବତା କବଳରୁ ଏ ସବୁ ଉବୁରି ପାରନ୍ତି ନାହିଁ । ଅଦମ୍ୟ କର୍ମ ପ୍ରେରଣାରେ ପ୍ରୋତ୍ସାହିତ ମଣିଷ ମୃତ୍ୟୁ ଶଙ୍କୁଳ

ବର୍ତ୍ତମରେ ନିଜକୁ ଆବିଷ୍କାର କରେ । 'ଅଲୋଡ଼ା ଲୋଡ଼ା'ର 'ଲୋଡ଼ା ନାହିଁ' କବିତାରେ ସଚ୍ଚି ରାଉତରାୟଙ୍କ ପରି ସେ ନୂଆ ମଣିଷକୁ ନିଜର ପରିଚୟ ଦିଅନ୍ତି :

''ମାଧବୀ ନିଶାର ମୃଦୁ କମ୍ପନ
ଲୋଡ଼ାନାହିଁ, ମୋର ପ୍ରିୟାରେ
ଶାଳ୍ମଳୀ ଫୁଲ ରକ୍ତର ରାଗ
ଚଞ୍ଚଳ କରେ ହିୟାରେ ।
ପ୍ରେମେ ମୋର ନାହିଁ ମଦିର ଆବେଶ
ନାହିଁ ଅବସାଦ ଗନ୍ଧ
ଆଗୋ ! ମୁଲାୟେମ ସୁରେ
ରଚିତ ନୁହେଁ ମୋ ଛନ୍ଦ ।
କୋଟି ଜୀବନର ବିକ୍ଷତ ପ୍ରାଣ
ସ୍ୱପ୍ନେ କରିଛି ଅନ୍ଧ
ନବଯୌବନେ ସିକ୍ତ ହୃଦୟ
ପ୍ରଳୟର ପାଶେ ଠିଆରେ ।''

ଯୁଦ୍ଧୋତ୍ତର ପୃଷ୍ଠପଟକୁ ଜର୍ଜ ବର୍ଣ୍ଣାଡ଼୍ ଶ' ବା ଗର୍କୀଙ୍କ ପରି ଅନୁଧ୍ୟାନ କରୁଥିବା କବି ବୌଦ୍ଧିକ ପରିବର୍ତ୍ତନ ମାଧ୍ୟମରେ ପ୍ରଗତିବାଦୀ ଚିନ୍ତାକୁ ଆପଣାର କରିବା ପାଇଁ ଆଶାୟୀ ଥିଲେ । ବାମପନ୍ଥୀ ଆଦର୍ଶରେ ବିଶ୍ୱାସ କରୁଥିବା ଅଡେନ୍ ଓ ଲୁଇ ମ୍ୟାକ୍‌ନିସ ପରମ୍ପରାର ଆକର୍ଷଣ ଭୁଲିବା ପାଇଁ ଜନଗଣଙ୍କ ସହିତ ସାମିଲ ହୋଇଥିଲେ । ତେଣୁ ଅନନ୍ତ ପଟ୍ଟନାୟକ ଓ ସଚ୍ଚି ରାଉତରାୟ ଆନ୍ତର୍ଜାତିକ ସାହିତ୍ୟ ଆନ୍ଦୋଳନର ତାତ୍ପର୍ଯ୍ୟ ବୁଝିବା ପରି ଜାତୀୟ ସ୍ୱାର୍ଥକୁ ସାମ୍ୟବାଦୀ ଯୁକ୍ତି ସହିତ ଜଡ଼ିତ କଲେ । ଭାରତୀୟ ଜନ ଜୀବନ ପରିପ୍ରେକ୍ଷୀରେ ସେମାନଙ୍କୁ କବିର ଶୈଳୀ ଏବଂ ଭାବଧାରା ହୃଦୟଛୁଆଁ କରିବାକୁ ପଡ଼ିଥିଲା । ମନ ମତାଣିଆ ଛନ୍ଦରେ ପାଠକ ମନକୁ ବାନ୍ଧି ରଖି ସେମାନେ ବିଦେଶୀ ଶାସନର ଲାଞ୍ଛନା ଓ ଅତ୍ୟାଚାରକୁ ମୁକାବିଲା କରିବା ପାଇଁ ଆହ୍ୱାନ ଦେଇଥିଲେ ଶିକ୍ଷାର୍ଥୀ ଜୀବନରେ । ଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ ସେମାନଙ୍କ ଅଗ୍ନିବର୍ଷୀ ଲେଖନୀ ପରାଧୀନତାର ନିବାଡ଼ ଭାଙ୍ଗିବା ପାଇଁ ଅଗଣିତ ନରନାରୀଙ୍କୁ ଐକ୍ୟ ଓ ସାମ୍ୟ ମନ୍ତ୍ରରେ ଉଦ୍‌ବୁଦ୍ଧ କରିଥିଲା ।

କୁହାଯାଇଛି, କବି ଜୀବନର ପ୍ରତ୍ୟୁଷରୁ ଅନନ୍ତ ସାଂସ୍କୃତିକ ପରିବର୍ତ୍ତନର ଧାରା ଓ ଗଣ ଜୀବନର ନିତିଦିନିଆ ସମସ୍ୟା ସଂପର୍କରେ ସଚେତନ ଥିଲେ । ସେ ଥିଲେ ଅତ୍ୟନ୍ତ ନିର୍ଭୀକ

ଏବଂ ବିପ୍ଳବବାଦୀ । ଏଥିପାଇଁ ତାଙ୍କୁ ବାରମ୍ୱାର କାରାବରଣ କରିବାକୁ ପଡୁଥିଲା । ଛଦ୍ମ ନାମରେ ଲେଖାମାନ ପ୍ରକାଶ କରିବାକୁ ହେଉଥିଲା । ବିଶ୍ୱଯୁଦ୍ଧର ପ୍ରଭାବରେ ଅର୍ଥନୀତିର ନୂଆ ରୂପରେଖ ଦେଖି ସେ ମର୍ମାହତ ହୋଇଥିଲେ । ୧୯୪୩ ମସିହାର ଦୁର୍ଭିକ୍ଷ ଅସ୍ଥି କଙ୍କାଳର ଦୀର୍ଘ ଶୋଭାଯାତ୍ରାରେ ଅବରୁଦ୍ଧ କରିଥିଲା କାବ୍ୟିକ କଳ୍ପନାର ଗତି । ଇଂରେଜ ରାଜତ୍ୱର ଶେଷ ଦିନଗୁଡ଼ିକ ତାଙ୍କ ପରି ବିପ୍ଳବୀ ପାଇଁ ଆତଙ୍କମୟ ଥିଲା । ମାନବ ପ୍ରଗତିରେ ପ୍ରତ୍ୟୟ ଅତୁଟ ରଖିଥିବା ଏଇ କବି ଖଟିଖିଆ, ଦୀନ ମଜୁରିଆ ଓ ନିରୀହ ଗ୍ରାମବାସୀଙ୍କ ଦୁଃଖରେ ଅତୀବ ବ୍ୟଥିତ ଓ ଚିନ୍ତିତ ଥିଲେ । ହୃଦୟଭରା ଅନୁକମ୍ପା ଢାଳି ଦେଉଥିଲେ ସେମାନଙ୍କୁ ସଂଗଠିତ, ସୁପରିଚାଳିତ କରିବାକୁ । ସ୍ଥାଣୁ ସମାଜକୁ ଉଦ୍‌ବୁଦ୍ଧ ଓ ପ୍ରାଣସ୍ପନ୍ଦିତ କରିବା, ପରାଧୀନତାର ଶୃଙ୍ଖଳ ଛିନ୍ନ କରିବା ପାଇଁ ତାଙ୍କୁ ଶକ୍ତିମନ୍ତ କରିବାର ସାଧନା ଥିଲା ଅଚିନ୍ତନୀୟ, ଅପରିକଳ୍ପନୀୟ ।

କାଳିନ୍ଦୀଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ ଏବଂ ଅନ୍ନଦାଶଙ୍କର ରାୟଙ୍କ ପରି ସବୁଜ ଯୁଗର ସ୍ୱନାମଧନ୍ୟ କବିଙ୍କ ରଚନାରେ ରବୀନ୍ଦ୍ରନାଥଙ୍କ ପ୍ରଭାବ ଥିଲା । ୧୯୦୯ରେ ଗୋପବନ୍ଧୁଙ୍କ ବନ ବିଦ୍ୟାଳୟ ପ୍ରତିଷ୍ଠା ପରେ ଓଡ଼ିଶାରେ ଜାତୀୟ ଆନ୍ଦୋଳନର ଯେଉଁ ଭିତ୍ତି ପ୍ରତିଷ୍ଠା ହୋଇଥିଲା ତା'ର ଫଲଗୁ ଧାରା ନୀଳକଣ୍ଠ, ଗୋଦାବରୀଶ ମିଶ୍ର ଓ ମହାପାତ୍ର, ପଦ୍ମଚରଣ ଓ କୁନ୍ତଳାକୁମାରୀଙ୍କ କବିତାରେ ପ୍ରବାହିତ ହେଉଥିଲା ବର୍ଦ୍ଧିଷ୍ଣୁ–ବଳିଷ୍ଠ ରୂପରେ । ତେଣୁ ପ୍ରଗତିଶୀଳ ଚିନ୍ତାଧାରାର କବିମାନଙ୍କର ଦାୟିତ୍ୱ ହେଲା ମାନବ ଅଧିକାର ସଂପର୍କରେ ଜନଗଣଙ୍କୁ ଅବହିତ କରିବା । ଜାତୀୟ ଉନ୍ମେଷର ମୁହୂର୍ତ୍ତରେ କୃଷକ, ଶ୍ରମିକଙ୍କୁ ସମନ୍ୱୟ ବାର୍ତ୍ତାରେ ଉଦ୍‌ବୁଦ୍ଧ କରିବା; ଐକ୍ୟ ଅହିଂସା, ସତ୍ୟ ସାହସର ବ୍ରତରେ ଦୃଢ଼ କରିବା । ଏଇ କ୍ରାନ୍ତିକାରୀ ପ୍ରୟାସର ସାର୍ଥକତା କେହି ନିର୍ଣ୍ଣୟ କରେନାହିଁ । ସେମାନଙ୍କ ସହିତ ନିଜକୁ ଜଣେ ବୋଲି ମନେ କରି ଅନନ୍ତ ଅତନୁ, ଅଣାକାର, ବୋଧିସତ୍ତ୍ୱ, କୁମାରୀ ଯଶୋଧାରା ନାମରେ ଲାଞ୍ଛନ ପୀଡ଼ନର ନିଖୁଣ ଚିତ୍ର ଥୋଇ ଦିଅନ୍ତି କବିତା ଓ ଗଳ୍ପରେ । ଇଂରେଜ ସରକାର ୧୯୩୮ରୁ ୧୯୪୦ ମଧ୍ୟରେ ତାଙ୍କ ବିରୋଧରେ ଜାଗତିଆର ରହନ୍ତି, ଧମକ ଦିଅନ୍ତି ଥରକୁ ଥର । ସେଇ ଅନୁଭୂତିରେ ଶାଣିତ କବିତାର ନିମ୍ନୋକ୍ତ ପଂକ୍ତିଗୁଡ଼ିକ ତାଙ୍କ ସାମାଜିକ ଅଙ୍ଗୀକାର ସଂପର୍କରେ ଆଲୋକପାତ କରେ:

ଝରିଯା ଲହୁ ମୋ, ଝରି ଯା ପୁଲକେ, ଜନ୍ମଭୂମିର ଜୀବନ ପଥେ,<br>
ଜଞ୍ଜୀର ଶତ ଖସୁ ମୋ ଜାତିର, ଚଳୁ ସେ ମାଟିରେ ସୃଜନ ରଥେ

ଶାନ୍ତି ଆମୋଦେ ଆଣିଦିଅ ଯେତେ ଶାଶ୍ୱତ ଶତ ସଖ୍ୟ ବଳ
ଝରରେ ରୁଧିର ଅଧୀରେ ଝର
ଅଶ୍ରୁ ସାଗରେ ଅଗ୍ନି-ବାଣୀ ତୁ, ଅନ୍ତରେ ମୋର ଜଳରେ ଜଳ
ଧୂସର ବାଲିର ବେଳାରେ ବେଳାରେ
ଶସ୍ୟ-ସୁଷମା ଖେଳାରେ ଖେଳାରେ
ଝରି ଯା ଝରିରେ ପ୍ରାଣର ଅଞ୍ଜିରେ ପୋଛି ଦେଇ ମନୁ ଆପଣା ପର,
ଝରରେ ରୁଧିର ଝରରେ ଝର
କରାଳ କାଳର କୃଷ୍ଣ-କପୋଳ ସ୍ୱପ୍ନ ତାରକା ଝଳରେ ଝଳ ।
(କିଛୁତ)

ଅନନ୍ତ ପଟ୍ଟନାୟକଙ୍କ କବିତାର ଆବେଦନ ସମୟ ସମୟରେ ୱାଲ୍‌ଟ୍ ହୁଇଟ୍‌ମ୍ୟାନ୍‌ଙ୍କ ବିଶ୍ୱଜନୀନ ଆବେଦନ ପରି । ତାଙ୍କର କ୍ରୁଦ୍ଧ କାବ୍ୟୋକ୍ତି ଅର୍ଥପୂର୍ଣ୍ଣ ଅନୁକମ୍ପାରେ ବିଲୀନ ହୁଏ । ଦୃଢ଼ ମନୋବଳରେ ସେ ଦୁଃଖ ଦୁର୍ବିପାକ ଦୂର କରିବାର ପନ୍ଥା ସୂଚିତ କରନ୍ତି । ତାଙ୍କର କାବ୍ୟିକ ଯୁକ୍ତି ଅନନ୍ୟ । ଗଣ ଜୀବନର ଭାବମୂର୍ତ୍ତି ସମୁଜ୍ଜ୍ୱଳ କରିବା ପାଇଁ ଲୋକମାନେ ଯଦି ମନ୍ଦ ଶକ୍ତିକୁ ପ୍ରତିହତ କରନ୍ତି କଳାର ଭୂମିକା ସେଥିରେ ସାର୍ଥକ ହୁଏ । ନିର୍ଦ୍ଦିଷ୍ଟ ସାଂସ୍କୃତିକ ପରମ୍ପରାର କାବ୍ୟିକ ବିଭାବକୁ ସଂସ୍କରିତ କରିବା ପାଇଁ ସେ କଳାଗତ ନୈପୁଣ୍ୟର ପରିଚୟ ଦିଅନ୍ତି କେବେ ଶବ୍ଦଟିଏ, କେବେ ଚିତ୍ରକଳ୍ପଟିଏ, କେବେ ଛନ୍ଦାଂଶରେ ସଂପର୍କ ପ୍ରତିଷ୍ଠା କରି । ଛନ୍ଦୋବଦ୍ଧ କବିତା ରଚନା ପାଇଁ ସେ ସଚେତନ ଭାବେ ଶବ୍ଦ ଖୋଜି ବସନ୍ତି ନାହିଁ । ଆବଶ୍ୟକ ସ୍ଥଳେ, ଛନ୍ଦରେ ନୂଆ ସୂତ୍ର ପ୍ରୟୋଗ ହୁଏ । ତାଙ୍କ କବିତାର ନିର୍ମିତି ହୁଏ ତ୍ରୁଟିହୀନ । ଅର୍ଥ ଅନ୍ୱେଷଣ ପାଇଁ ପଦ ବିନ୍ୟାସ ବାଧକ ହୁଏ ନାହିଁ । ସାମାଜିକ ଦ୍ୱନ୍ଦ୍ୱର ସ୍ୱରୂପ ସୂଚିତ କରୁଥିବା ବେଳେ ସେ ବୌଦ୍ଧିକ ସ୍ତରର ଭାବନାକୁ ଆବେଗିକ ଧରଣା ସହିତ ସମନ୍ୱିତ କରନ୍ତି । ତେଣୁ ପାଠକ ପାଠିକାଙ୍କ ମନରେ ତାଙ୍କର କାବ୍ୟ ଭାଷା ଯେଉଁ ଛନ୍ଦଭରା ପ୍ରଭାବ ସୃଷ୍ଟି କରେ ସେଥିରୁ ସେମାନେ କବିତାର ଲକ୍ଷ୍ୟ ସଂପର୍କରେ ସଚେତନ ହୁଅନ୍ତି । ଅନାବଶ୍ୟକକୁ ବାଦ୍ ଦିଅନ୍ତି ।

ଜୀବନ ଓ ଜନ୍ମଭୂମିକୁ ସମୃଦ୍ଧ କରିବା ପାଇଁ ନାରୀ ପୁରୁଷଙ୍କୁ ଏକ ସ୍ୱରରେ ସେ କର୍ମ ସଚେତନ କରନ୍ତି, ସୁଖ ଦୁଃଖରେ ଅଂଶୀଦାର ହେବାକୁ ଆହ୍ୱାନ ଦିଅନ୍ତି । ସମୃଦ୍ଧି ଓ ସମାଜିକ ନ୍ୟାୟ ପଥରେ ଥିବା ଦ୍ୱେଷ ଓ ଦୈତ୍ୟ ଶକ୍ତିକୁ ପରାହତ କରିବା ହିଁ ସର୍ଜନାତ୍ମକ ବିଜୟ ଯାତ୍ରା ବୋଲି ସେ କହନ୍ତି । ସବୁର ହୃଦୟରେ ଥିବା ଐକ୍ୟ ସୂତ୍ରରେ କବି ସତେ ବା ନିବଦ୍ଧ ।

ଦୁରାଶା, ହତାଶା, ଦୁର୍ଭାବନାର ପରିଣତି ସେ ବୁଝି ପାରନ୍ତି । ସେ ତାରକା ଯୁଦ୍ଧ ସମେତ ଆଧୁନିକ ସଭ୍ୟତାର ଆତଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରନ୍ତି । ତେଣୁ ଆତ୍ମବିଶ୍ୱାସରେ ପ୍ରତିଷ୍ଠିତ ହୋଇ ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ଦୂର କରିବାର ବାର୍ତ୍ତା ଉଚ୍ଚାରିତ ହୁଏ ତାଙ୍କ କବିତାରେ । ବାଧାବିଘ୍ନ ଅତିକ୍ରମ କରିବା ପାଇଁ ପାଠକଙ୍କୁ ପ୍ରେରଣା ଦିଏ ।

ପରମ୍ପରାକୁ ବିଜ୍ଞାନ ସହିତ ସଂପର୍କିତ କରି କବି ଅନନ୍ତ ପଟ୍ଟନାୟକ ଅନାବଶ୍ୟକ ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ, ଦାର୍ଶନିକ ଅବସାଦ ଏବଂ ସାମାଜିକ କୁସଂସ୍କାରକୁ ପରିହାସ କରନ୍ତି । 'ତୃଷ୍ଣା' କବିତାରେ ସେ ଦେହ ଓ ମନର ସମନ୍ୱିତ ନୈପୁଣ୍ୟ ଅର୍ଜନ ପାଇଁ ପ୍ରକୃତିର ଅବଦାନ ଦାମ୍ପତ୍ୟ ଜୀବନ ପ୍ରସଙ୍ଗରେ ବୁଝାଇଛନ୍ତି :

ପ୍ରେମ- ସୁଧାରସେ ସିକ୍ତ କର ଗୋ
　　　　ଅନ୍ତର ମୋର ସଜନି !
　　　　ଆଜି ଗଭୀର ହେଲାଣି ରଜନୀ !
ଆକାଶେ ତାରକା ଚିପି ଚିପି ହସେ
ଜୋଛନାର ବାଳା ନିରୋଳେ ବିଳସେ
ମିଛ ଛଳନାରେ କହନା ପ୍ରେୟସୀ !
　　　　"କ୍ରୀଡ଼ା କଉତୁକେ ମଜନି !"
　　　　ଆଜି ଗଭୀର ହେଲାଣି ରଜନୀ !
ଯଉବନ-ଖେଳା ସରେ ନା ଗୋ ସଖି !
　　　　ସରେ ନା ଗୋ କେଉଁ ସଲୀଳା !
ନିଭେ ନାହିଁ କେବେ ବାସନା-ଅନଳ
　　　　ଥରେ ଯେବେ ହୃଦେ ଜଳିଲା ।
ଭାସିଆସେ ଦୂରୁଁ ଫୁଲ ସଉରଭ,
ଲୁଚା ନା ଲୋ' ପ୍ରିୟା ! ପ୍ରେମ ଗଉରବ
ନୀରବ ହେଲାଣି, ପଥ ପଛପଟ
　　　　ଆଖଡ଼ା ଘରର ଖଂଜଣୀ
ରାଜପଥ ଆଜି ନିଜନ ନିଛାଟ,
　　　　ନାହିଁ କେହି ଜଣେ ପଥୁକୀ

ଶମଶାନ ପାଖ ବେଣୁବନୁଁ ଶୁଭେ,
ରହି ରହି ଡାକେ ଡାହୁକୀ ।
ବିରଳ କର ଲୋ ସବୁ ବେଶଭୂଷା
ସହଜ ପୁଲକେ ଶୋହି ଉଠ ଯୋଷା
ସରଳ ପ୍ରାଣର ସ୍ନେହ-ଅନୁଭୂତି
ନିମେଷକ ଲାଗି ତେଜନି ।
ଆଲୁଅର ତଳେ ଅନ୍ଧାର ଘନ,
ସଭ୍ୟତା ଦେଲା ସରମେ,
ଓଢ଼ଣା ଉଢ଼ାଲୁଁ ଦି଼ବସରେ ସିନା
ଚାହିଁ ରହ ଭୟ– ଭରମେ !
ବୁଝି ଶୁଝି ଚଲୁଁ ଭୁଲିଯାଅ ବାଟ,
ଦୁନିଆରେ ବସେ ଦୋଚାରୁଣୀ ହାଟ ।
ସରଳ ନ କରି ଜାଣୁ ଜାଣୁ ନାରୀ,
କୁଟିଳ ନ କର ସରଣୀ !
ଖୋଲ ଆବରଣ, ପୋଛିଦିଅ ଯେତେ
ମଳିଧୂଳି ମନେ ଜମିଲା,
ଖୋଲା ମନ ଘେନି ଦେଖ ଲୋ ଜୀବନେ
ନୂଆର ପରଶ ନଇଁଲା ।
ନାହିଁ ଅବସାଦ ହୃଦୟ-ପୀଡ଼ନ
ନିଶୀଥେ ଜାଗିଲା ଚିର ଯୌବନ !
ସ୍ୱପନ ନୁହେଁ ଏ ବାସ୍ତବ ଖର
ସତ୍ୟ ଏ ପ୍ରେମ କରଣୀ ।
ଦେହ ମନ ଦୁହେଁ ଦୁହିଁରେ ଜଡ଼ିତ
ଏକ ଆନେ ତେଜି ଥାଏନା,
ଖାଲି କଳପନା ମନର ଆମୋଦେ
ହୃଦୟ ପୁଲକ ପାଏ ନା !

ଦେହ ଗଲେ ସଖି ଯାଏ କଳପନା;
ତୁଟେ ଲୋ ସକଳ ପ୍ରେମ-ଆଳାପନା
ଏ ଜୀବନ ପରେ ଜୀବନ କାହିଁ ଗୋ
ସପନ ସରିଟେ ହଜନି
ଗଭୀର ହେଲାଣି ରଜନୀ !
ଚଇତି ପ୍ରୀତିର ମାଧୁରୀ ବୋଳି ଲୋ
ତନୁ ମନେ ପ୍ରିୟା ବିଳସ !
ଛପି ଛପି ଯାଉ ଯଉବନ ରାଗେ
ସଜଳ ଯାତନା ଅଳସ
ହାସଲୋଳ ମୁଖେ ଅନାଥ ସୁଦୂରେ
ମୁକ୍ତ ଜୀବନ-ତଟିନୀର ପୂରେ
ଗାଆ ପ୍ରେମ ଗୀତ ଅନାହତ ସୁରେ
ସଚକିତ ହେଉ ଧରଣୀ
ଖୋଲ ଆଖି ପ୍ରିୟା,
ଗଭୀର ହେଲାଣି ରଜନୀ !

କବି ଲଜ୍ଜାବତୀ ନାୟିକାକୁ ମିଛ ବିନୟ ପରିହାର କରିବା ପାଇଁ ଆବେଦନ କରିଛନ୍ତି । ପ୍ରେମ ମାଧ୍ୟମରେ ନୂଆ ପରିଚୟ ଖୋଜିବା ପାଇଁ ଆଗଭର ହୋଇଛନ୍ତି । ପ୍ରୁଫ୍ରୋକ୍ ପାଇଁ ଯଦି "Let's go then you and I" ଏକ ଆଦର୍ଶ ଅଭିବ୍ୟକ୍ତି ହୁଏ 'ମଣିଷର ସ୍ୱର' ସେମାନଙ୍କୁ ସମୁଦ୍ର ଢେଉରୁ ଉଠାଇନିଏ । 'ଦୃଷ୍ଟା' ପରସ୍ପର ଉପରେ ପ୍ରତ୍ୟକ୍ଷ ରଖିବା ପାଇଁ ଏକ ମନୋଜ୍ଞ ମୁହୂର୍ତ୍ତର ଆଭାସ ଦିଏ । ପ୍ରେମିକ, ପ୍ରେମିକା ସେମାନଙ୍କ ବ୍ୟକ୍ତିଗତ ଜଗତରୁ ଆତ୍ମପ୍ରକାଶ କରିଛନ୍ତି । ଅମୃତ ଛିଟା ନକ୍ଷତ୍ର ପୁଞ୍ଜର ତୁଳନାରେ ସମ୍ବନ୍ଧିତ ହୋଇଛି । ତାରା ମିଟ୍ ମିଟ୍ କରିବା ବେଳେ ସ୍ମୃତିରୁ ଦୀପ୍ତି ବାରି ହେଉଛି । କୌତୁକିଆ ଚାହାଣିରେ ଚଢ଼େଇଟିଏ ଲଟେଇ ଥିବାର ଦିଶେ କୁଞ୍ଜରେ । ମାନବ ଅବସ୍ଥାକୁ ଅତିକ୍ରମ କରି ବଞ୍ଚି ରହୁଥିବା ପ୍ରେମାନୁଭୂତିର ବିନିମୟ ଶାନ୍ତ ସୁନ୍ଦର ପରିବେଶରେ ହିଁ ସମ୍ଭବ ହୁଏ ।

କବିତାର ପ୍ରଥମାର୍ଦ୍ଧ ଚିତ୍ତାକର୍ଷକ ପରିବେଶ ସୃଷ୍ଟି କରିଥିବା ବେଳେ ଦ୍ୱିତୀୟାର୍ଦ୍ଧରେ କବି ତଥାକଥିତ ଆଧୁନିକ ସଭ୍ୟତାର ଚଳଡି ମୂଲ୍ୟବୋଧକୁ ବ୍ୟଙ୍ଗ କରିଛନ୍ତି । ଶେଷ କେତେ

ଧାଡ଼ିରେ ନାରୀ ପୁରୁଷର ଦେହ ମନ ସଂପର୍କ ବିଶ୍ଳେଷିତ ହୋଇଛି । ଜୀବନର ପ୍ରକୃତ ପ୍ରକୃତି ବୁଝିବା ପାଇଁ ଆବେଦନ ରହିଛି ।

ଶ୍ରୀ ପଟ୍ଟନାୟକ ଯୁଗ ପ୍ରବର୍ତ୍ତକ ଘଟଣା ସବୁର ପ୍ରଭାବଶାଳୀ ଚିତ୍ରଣ ପାଇଁ ବାରମ୍ବାର ପ୍ରଶଂସିତ ହୋଇଛନ୍ତି । ସେସବୁ ଘଟଣା ଇତିହାସର ମୋଡ଼ ବଦଳାଇ ଦେଇଛି । ଜାତୀୟ ଜୀବନରେ ରେଖାପାତ କରିଛି । ଖଦଡ଼ ପିନ୍ଧିବା, ସତ୍ୟାଗ୍ରହରେ ଯୋଗ ଦେବା, ସତ୍ୟର ପକ୍ଷ ସମର୍ଥନ ପାଇଁ ଯୁକ୍ତି ବାଢ଼ିବା, ବାରମ୍ବାର କାରାବରଣ କରିବା ଜଣେ ସଂଗ୍ରାମୀ ପାଇଁ ଯଥାର୍ଥ । ମଣିଷ ଉପରେ ଆସ୍ଥା ସ୍ଥାପନ କରିବା ଏବଂ ସାରା ଜୀବନ ଜାତିର ଅଗ୍ରଗତି ପାଇଁ ଜାଗରୂକ ରହିବା ପ୍ରଗତିବାଦୀ ଲେଖକ ପାଇଁ ସ୍ୱାଗତଯୋଗ୍ୟ ଭୂମିକା । ହୁଇଟ୍‌ମ୍ୟାନ୍ କହିବା ପରି ସେ ଗଣ ଅଙ୍ଗୀଭୂତ ବ୍ୟକ୍ତିସତ୍ତା । ତେଣୁ ଶାନ୍ତି, ଶ୍ରଦ୍ଧା ସମ୍ବେଦନାର ସ୍ୱର ବ୍ୟାହତ ହେଲେ ସେ ଶଙ୍କିତ ଓ ବ୍ୟଥିତ ହୁଏ । କାଶ୍ମୀରର ବିପଦଗ୍ରସ୍ତ ଭ୍ରାତୃବୃନ୍ଦ ପାଇଁ ଅନନ୍ତ ଉଦ୍‌ବେଗ ପ୍ରକାଶ କରନ୍ତି:

> ମେଘରେ ମେଘରେ ବାଗୁଡ଼ି ଖେଳ ଯେ
> ବାଗୁଡ଼ି ଖେଳ
> ବିଜୁଳି ଛାଡ଼ିଛି ହୁରି
> ସରାଗ ବିଲରେ ବିରାଗ ଖାଲି ଯେ
> ବିରାଗ ଖାଲି
> ଭାଇରେ ଭାଇରେ ଝୁରି ।

ପୂର୍ବରୁ ଆଲୋଚିତ ହୋଇଛି ଟଲଷ୍ଟୟ, ଗର୍କୀଙ୍କ ପରି ମହାନ ଲେଖକମାନଙ୍କୁ ଅନନ୍ତ ଅତି ଶ୍ରଦ୍ଧା ଦୃଷ୍ଟିରେ ଦେଖୁଥିଲେ । ସେ ଗାନ୍ଧିଜୀଙ୍କ ଆଦର୍ଶ ଏବଂ ଦୈନନ୍ଦିନ ଜୀବନରେ ଭାରତୀୟ ସାଂସ୍କୃତିକ ମୂଲ୍ୟବୋଧର ପ୍ରୟୋଗ ସଂପର୍କରେ ବେଶ୍ ସଚେତନ ଥିଲେ । ସେଥିପାଇଁ ଯୁଦ୍ଧର ଦୈତ୍ୟ ଓ ଶାନ୍ତିର ଦେବଦୂତ ଯେମିତି ସାମ୍ନା ସାମ୍ନି ବସି ରହୁଥିଲେ ତାଙ୍କ ସ୍ୱପ୍ନରେ । ସର୍ଜନାତ୍ମକ ରାହା ଅନୁସନ୍ଧାନ କରୁଥିଲା ମାନବିକ ପ୍ରୟାସର ସାର୍ଥକତାକୁ । "ଆମେ ଯେ ଧରିଛୁ କ୍ରିୟା"ରେ ନେହେରୁଙ୍କ ଉଦ୍ଦେଶ୍ୟରେ ସେ କହିଛନ୍ତି

> ଶାନ୍ତିର ପାରା ଉଡ଼ାଇ ଦେଇଛୁ
> ଫେରିନି, ଫେରିନି ଜାଣୁ !
> ଦେଶେ ଦେଶେ ଘୂରେ ଆଜି,

. ବନ୍ଧ ହୋଇନି ଘାତକ ଅଶ୍ୱ-ହ୍ରେଷା !
ଅସ୍ଥିରେ ଉଠେ ବାଜି !
ଖୋଲ, ଖୋଲ, ତୁମ
ଗୋଲାପୀ ସ୍ୱପ୍ନ ଖୋଲ !
ଆଜି ବିଦ୍ରୋହୀ ! ବୋଲ ଆଉ ଥରେ
ତୁମ ସ୍ୱପ୍ନର ଗୀତି ବୋଲ !
ଲୁହ—ଅଞ୍ଜଳି ଟେକି
ନୂତନ ଶପଥେ ଯାଉ ତାହା ଯାଉ
ହୃଦୟ ରୁଧିରେ ଲେଖି !
(ଅରଡୁ—ରଡୁ :୩୦)

କଳା ସର୍ଜନା ସହିତ ଆତ୍ମିକ ଭାବ ପ୍ରତିଷ୍ଠା ପାଇଁ ବିଶ୍ୱକୁ ପଟ୍ଟଭୂମି ମନେ କରୁଥିବା କବି ବସ୍ତୁର ହୃଦୟ ସହିତ ନିଜକୁ ନିବଦ୍ଧ କରନ୍ତି ।

ଠିକ୍ ଯେତେବେଳେ କୁଶବିଦ୍ଧ ପୁରୁଷର ରକ୍ତରାଗରୁ
ରେଖାଙ୍କନକୁ ବାରିବାରି କରେଁ, ଅନୁସରଣ କରେଁ
ଲୌହଖଣ୍ଡଗୁଡ଼ିକ— ହୁଅନ୍ତି, କଥା ହୁଅନ୍ତି—
ତାପାନୁତାପରେ ଜର୍ଜର ଆତ୍ମାଗୁଡ଼ିକ ସହିତ ।।
ନିଜକୁ କେନ୍ଦ୍ରୀଭୂତ କରେ, ନିଜକୁ ମୁଁ ନିଜେ, ତୁମଠି !
ଚିତ୍କାରି ଉଠେ ଇଞ୍ଜିନ୍‌ମାନ, ଝିନ୍ ଝିନ୍—
କୁଜ୍‌ଝଟିକା ଭେଦ କରି ଝଲମଲ କର ତୁମେ,
ଛାୟାର ବିନ୍ଦୁ ଏକ, ରହସ୍ୟମୟ ନୀଳର !
x x x x
ନର୍ତ୍ତିତ ହୋଇ ଲୌହଶାଳାରେ
ସୁଦକ୍ଷ ହାତରେ ବା କେତେ
ଆତ୍ମାରେ ପଶିଆସି ହସି ଉଠେ କେଜାଣି କେତେ ଚନ୍ଦ୍ର !

ଅଜ୍ଞାନତା, ଜୀବନ ପ୍ରତି ନିରୁତ୍ସାହିତ ଭାବ, ସାମାଜିକ ଦାୟିତ୍ୱ ପ୍ରତି ଉଦାସୀନତା ଏବଂ ନିଃସଙ୍ଗ-ଦ୍ୱୀପ ମନୋବୃତ୍ତି ବିଶ୍ୱର ବହୁ ସ୍ଥାନରେ ଜଞ୍ଜାଳ ଘଟାଇଛି । ସାହସ ପରିହାର

କରିଥିବା ମଣିଷ ସୁଅ ମୁହଁରେ ପତର ପରି ଏକୂଳ ସେକୂଳ ହେଉଛି । କବି ଜୀବନର ତତ୍ତ୍ୱ ଓ ତଥ୍ୟ ଅନୁଶୀଳନ କରି କର୍ମନିଷ୍ଠ ହେବା ପାଇଁ କବିତାରେ ଗୁରୁତ୍ୱ ଦେଇଛନ୍ତି ।

ପଲ୍ଲୀ କୋଣରେ ତାଙ୍କର ଜନ୍ମ । ଶୈଶବରେ ଗାଉଁଲୀ ଜୀବନର ଶାନ୍ତ ପ୍ରବାହ ତାଙ୍କୁ ପ୍ରଭାବିତ କରିଛି । ସବୁଜ ଲ୍ୟାଣ୍ଡସ୍କେପ୍, ପୁଷ୍ପଶୋଭିତ ଲତାକୁଞ୍ଜ ଏବଂ ଗ୍ରାମ୍ୟ ନଦୀର ଛନ୍ଦ ଶାନ୍ତି ଓ ପ୍ରେମର ସ୍ୱତଃସ୍ଫୂର୍ତ୍ତ ଭାବନା ଭରି ଦେଇଛି ମନରେ । ଅନୁକମ୍ପାରେ ସ୍ନିଗ୍ଧ କବିର ହୃଦୟ ବିଶ୍ୱକୁ ଦର୍ପଣ ପରି ପ୍ରତିଭାତ କରେ ମଣିଷ ସାମ୍ନାରେ । ତେଣୁ ସେ ଛାଇର ଛିଟା ପଡ଼ିଲେ ସ୍ୱଚ୍ଛତା ପାଇଁ ବ୍ୟସ୍ତ ହୁଅନ୍ତି । ପ୍ରତିକାର ଦାବି କରନ୍ତି ସଂକଟର, କାଳିମାର, ବିଭେଦକାରୀ ଶକ୍ତିର । କାବ୍ୟ ପଂକ୍ତିରେ ଆଗକୁ ଯିବା ପାଇଁ ରଶ୍ମିଲୁଳିତ ପଥରେ ଅଦ୍ଭୁତ ପ୍ରତ୍ୟୟରେ ପ୍ରତିଷ୍ଠିତ ମନ ପ୍ରିୟତମାକୁ ସମ୍ବୋଧନ କରି ନିଜର ବନ୍ଦନା ଉଚ୍ଚାରିତ କରେ । ଶବ୍ଦର ନିହାଣରେ କୀର୍ତ୍ତିର କୋଣାର୍କ ଗଢ଼ିବା ତାଙ୍କର ଧୁରୀଣ ପ୍ରୟାସ । ବିପଦକୁ ଭୟ ନ କରିବା ପାଇଁ ରବୀନ୍ଦ୍ରନାଥଙ୍କ ପ୍ରେରଣା ପ୍ରଚ୍ଛନ୍ନ ରହେ ତାଙ୍କ ମାନସପଟରେ ।

# ଦୁଇଟି ନାଟକ

He who is unable to rule over self,
can never really succeed in
ruling over others :

**– Gandhiji**

ଅନନ୍ତ ପଟ୍ଟନାୟକଙ୍କ କବିତାଗୁଡ଼ିକୁ ମନୋଯୋଗ ପୂର୍ବକ ଅଧ୍ୟୟନ କଲେ ଅନେକ ସମୟରେ ନାଟକୀୟ ଉପାଦାନ ବାରି ହୋଇପଡ଼େ । ପ୍ରାୟ ବିସ୍ମୟବାଚୀ ଓ ପ୍ରଶ୍ନବାଚୀର ନେଣ୍‌ଦେଣ୍ ଅଙ୍କ ରହିଥାଏ ପଂକ୍ତି କେତୋଟିରେ । ସିଧାସଳଖ ମନ୍ତବ୍ୟସବୁ କେବେ କଳ୍ପନାରେ ମଞ୍ଚ ତିଆରି କରିବା ଭଳି ମନେହୁଏ; ଆଉ କିଏ ଠିଆ ହୋଇଥାଏ । କାହାର ଆଖି ନାକ କଥା କହୁଥାଏ ! ଏ ସବୁ ନାଟକ ପ୍ରତି କବିଙ୍କ ଅନୁରାଗ ସୂଚିତ କରେ । କବିତା ଓ ନାଟକ ମଧ୍ୟରେ କ୍ବଚିତ୍ ଦୂରତ୍ୱର ସୀମା ଚିହ୍ନଟ କରିହୁଏ ଶେକ୍‌ସ୍‌ପିଅରଙ୍କ ସ୍ୱଗତୋକ୍ତିରେ । ଅନନ୍ତ କିନ୍ତୁ ସେ ପର୍ଯ୍ୟାୟର ନାଟକ ରଚନାରେ ବ୍ରତୀ ହୋଇ ନାହାନ୍ତି । ସେ ଅନାଚାର, ଭ୍ରଷ୍ଟାଦର୍ଶକୁ ତାଚ୍ଛଲ୍ୟ କରିବା, ହୁଏତ ପ୍ରାଥମିକ ସ୍ତରରେ ଶିକ୍ଷାର୍ଥୀଙ୍କୁ ଦିଗ୍‌ଦର୍ଶନ ଦେବା ପାଇଁ ଉଦ୍ୟମ କରିଥିଲେ । ମହାକାବ୍ୟରୁ କଥାବସ୍ତୁ ନିର୍ବାଚନ ନିଶ୍ଚିତ ଭାବେ ତାଙ୍କ ପାଇଁ ଥିଲା ପରୀକ୍ଷାମୂଳକ ।

ଚଣାହଟା ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଥିବାବେଳେ ତାଙ୍କର ନାଟକ 'ରାବଣ' ମଞ୍ଚସ୍ଥ ଓ ପ୍ରଶଂସିତ ହୋଇଥିଲା । ମଞ୍ଚରେ ଆମେ ଯେଉଁ ରାବଣକୁ ଦେଖୁ ସେ ଶିଶୁ ନୁହେଁ, ଶିକ୍ଷାନବିସ୍

ନୁହେଁ । ସେ ତପଃଶକ୍ତିରେ ପ୍ରଚଣ୍ଡ । ଲଙ୍କାରୁ ଦାରିଦ୍ର୍ୟ ଦୂର କରିବା ପାଇଁ ଏଇ ଛତ୍ରପତି ପ୍ରତ୍ୟୁଷରୁ ବ୍ରହ୍ମାଙ୍କୁ ତପସ୍ୟାରେ ଆକୃଷ୍ଟ କରିଛନ୍ତି :

ରାବଣ (ସ୍ୱଗତ) – କିନ୍ତୁ ଦାରିଦ୍ର୍ୟ ଯିବ କିପରି ? ହେ ବିଶ୍ୱପିତା ! ତୁମେ ପକ୍ଷୀକୁ ଜନ୍ମ ଦେଇ ଉଡ଼ିବାକୁ କ୍ଷମତା ନ ଦେଲେ, ତା' ପାଇଁ ଫଳ ସୃଷ୍ଟି କରି, ସେତକ ସଂଗ୍ରହ ପାଇଁ ତାକୁ ଉପାୟ ନ ଦେଲେ, ସେ ବଞ୍ଚିବ କିପରି ? –(ତିଳ ତଣ୍ଡୁଳ ଅଡ଼ି ଦେଇ ମନ୍ତ୍ରୋଚାରଣ ) (କିଛି ସମୟ ପରେ) ଆଜି ପରମାତ୍ମନ୍ ! ଏ ଦେହ ତୁମର ! ଏ ଅଗ୍ନିରେ ଝାସ ଦେବି । ଛିନ୍ନ ମସ୍ତକର ରକ୍ତରେ ତୁମର ସୃଷ୍ଟ ଜୀବଙ୍କ କଲ୍ୟାଣ ଲାଗି ଯଦି ସଦୟ ନ ହେଲ, ଏ ଜୀବନରେ ପ୍ରୟୋଜନ କ'ଣ ? (ମନ୍ତ୍ରୋଚାରଣ କରି ଅନଳରେ ଝାସ ଦେବାକୁ ଉଦ୍ୟତ ହେଲାବେଳେ ବ୍ରହ୍ମାଙ୍କ ଆବିର୍ଭାବ– ପୂଜାବେଦି ଉଜ୍ଜ୍ୱଳ ହୋଇ ଉଠିବା)

ବ୍ରହ୍ମା – ରାବଣ ! ଶାନ୍ତ ହୁଅ ! ଶାନ୍ତ ହୁଅ ! ତୋର ତପସ୍ୟାରେ ମୁଁ ତୁଷ୍ଟ ହୋଇଛି । ନିଜର ଜୀବନକୁ ଅକାଳରେ ଶେଷ କର ନାହିଁ – ତୋର ମନସ୍କାମନା କ'ଣ କହ ! ପୂର୍ଣ୍ଣ ହେବ ! କ'ଣ କାମନା ତୋର ?

ରାବଣ –(ପ୍ରଣତ ହୋଇଉଠି) ତୁଷ୍ଟ ହୋଇଛ ! ତୁଷ୍ଟ ହୋଇଛ ପିତା ! (ଗଦ୍‌ଗଦ୍ କଣ୍ଠରେ) ମୋର କାମନା କ'ଣ ତୁମେ ଜାଣ ନାହିଁ– ସନ୍ତାନର କାମନା କ'ଣ ପିତାକୁ ଅଜ୍ଞାତ ରହେ–

ବ୍ରହ୍ମା – ଜାଣେ ରାବଣ, ତୁ ଲଙ୍କାବାସୀଙ୍କ ଲାଗି ତପସ୍ୟା କରୁଛୁ । ନିଜେ ଅଜେୟ ତ୍ରିଭୁବନ ବିଜୟୀ ହୋଇ ତାଙ୍କୁ ସୁଖୀ କରାଇବୁ । ଲଙ୍କାକୁ ଗୌରବ ମଣ୍ଡିତ କରାଇବୁ । ଯାଅ ବତ୍ସ, ତୋର ସେ ଇଚ୍ଛା ସଫଳ ହେବ । ତୁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ବଳ ବିକ୍ରମରେ ଅତୁଳନୀୟ ହେବୁ । ତୋର ଦଶ ମସ୍ତିଷ୍କର ବୁଦ୍ଧି ସଙ୍ଗେ ସମତା ରଖିବାକୁ ତୋର ବାହୁରେ, ବିଂଶ ବାହୁର ଅପରିମେୟ ଶକ୍ତି ଆସିବ । ଲଙ୍କା ତୋର ସ୍ୱର୍ଗ ହେବ । ଦେବ, ଦାନବ କେହି ତୋର ସମକକ୍ଷ ହେବେ ନାହିଁ । x x x

ରାବଣର ବ୍ରାହ୍ମ ମୁହୂର୍ତ୍ତର ପ୍ରାର୍ଥନାରୁ ନାଟକ ଆରମ୍ଭ ହୋଇଛି । ପ୍ରାୟତଃ ଶାସ୍ତ୍ରୀୟ ରୀତିରେ ସେ ବ୍ରହ୍ମାଙ୍କୁ ଅନୁନୟ ହୋଇ କହିଛି : ''ବ୍ରହ୍ମନ୍, ଆଉ କେତେ ଦିନ ଏଭଳି ଯନ୍ତ୍ରଣା ଦେଉଥିବ ? ସ୍ରଷ୍ଟା ତୁମେ, କୋଟି କୋଟି ନରନାରୀଙ୍କୁ ନିଜର ଆନନ୍ଦମୟ ମୁହୂର୍ତ୍ତରେ ସୃଷ୍ଟି କରି କେତେଦିନ ଏପରି ବୁଭୁକ୍ଷୁ, କୀଟାନୁକୀଟ କରି ରଖିଥିବ ? ଏ କି ନିର୍ଦ୍ଦୟ ଆନନ୍ଦ

ତୁମର ? ଜୀବଜଗତରେ ତୁମର ସବୁଠାରୁ ସୁମହତ୍ ସୃଷ୍ଟି ମାନବକୁ କେତେଦିନ ପଶୁ ପରି ଚାଳିତ କରୁଥିବ ? ମାନବକୁ ମାନବ କଲ କାହିଁକି ? ପଶୁ ଜନ୍ମରେ ତୁମର ସୃଷ୍ଟି ପ୍ରକ୍ରିୟାର ଛେଦ ପକାଇଲ ନାହିଁ କାହିଁକି ?'' ଦୃଶ୍ୟାନ୍ତରେ ରାବଣକୁ ''ଆଜିଠାରୁ ଧରଣୀରେ ତୁମେ ଶ୍ରେଷ୍ଠ ବ୍ରାହ୍ମଣ, ଶ୍ରେଷ୍ଠ କ୍ଷତ୍ରିୟ !'' ବୋଲି ସମ୍ବୋଧନ କରି ବ୍ରହ୍ମା ପ୍ରସ୍ଥାନ କରିବା ପରେ, ପରବର୍ତ୍ତୀ ସାକ୍ଷାତ୍‌ରେ ତ୍ରିଜଟାର ପ୍ରରୋଚନାରେ ମନ୍ଦୋଦରୀ ବୀର ଦିଗ୍‌ବିଜୟୀ ବେଶଧାରୀ ରାବଣକୁ ପାଛୋଟିବାକୁ ଯାଇଛି :

ରାବଣ : ଆଃ ବସୁନ କାହିଁକି ? ବାଃ, ବେଶ୍ ତ ପାଷାଣୀ ପ୍ରତିମାଟି ପରି ଠିଆ ହୋଇଛ – ଦିଗ୍‌ବିଜୟୀ ରାବଣ ମର୍ତ୍ତ୍ୟ ପାତାଳରେ ଘୂର୍ଣ୍ଣି ପରି ବହି ଛୁଟି ଆସିଛି ତୁମର ଟିକେ ଆଦର, ଟିକେ ସୋହାଗର କାମନାରେ, ବିଜୟୋନ୍ମତ୍ତ ଲଙ୍କାବାସୀର ଜୟଧ୍ୱନି ଆନନ୍ଦ କଳରବ । ପ୍ରାଣର ଆବେଗମୟ ଅଭିନନ୍ଦନ ତେଜି ତୁମର ସ୍ୱର୍ଗ ସୁଖରେ ବିଭୋର ହେବାକୁ । କୋମଳ ବାହୁ ବନ୍ଧନରେ ବିଜୟୀ ରାବଣକୁ ବନ୍ଦୀ କର ରାଣୀ ! x x

''ଆଃ ! ପ୍ରେୟସୀ ପରିଣୟର ବାସର ରାତ୍ରି ଯାପିବାକୁ ରାବଣ ସମୟ ପାଇ ନାହିଁ, ଆଜି ସେଥିଲାଗି ସେନାନୀ ଲଙ୍କା ଦ୍ୱାର ଦେଶରେ ଉପନୀତ ହେଉ ନ ହେଉଣୁ, ସେ ତୁମ ପାଖରେ ଉଭା ହେଇଛି !'' x x

ବିଧିନିର୍ଦ୍ଦିଷ୍ଟ ଥିବା ଭଳି ନାଟକର ଯବନିକା ପଡ଼ିବା ପୂର୍ବରୁ ରାବଣର ରକ୍ତାକ୍ତ ମୁହଁରେ ମନ୍ଦୋଦରୀ ମୁହଁ ଲୁଚାଇବା ବେଳେ ନାଟକର ଶେଷ ସଂଳାପ :

ରାବଣ : ''ଉଃ -ରାଣୀ ମୋର– ଲଙ୍କା ମୋର– ଉଃ ... ଆଃ !''

ହତାଶାର ଏଇ ଶେଷ ସଂଳାପ ରାବଣର ବିଚାର ବୁଦ୍ଧି ବିଭ୍ରାଟ ହୋଇଥିବା ପ୍ରମାଣିତ କରିଛି । ସେ ଉଚିତ ଜ୍ଞାନ ପ୍ରୟୋଗ କରିବାକୁ ଅସମର୍ଥ ହୋଇଛି । ଶେଷ ଥର ସଂଜ୍ଞା ଫେରି ପାଇବାରୁ ସେ ସୀତାଙ୍କୁ ଅନାଇ କହିଛି : ''କିଏ ସୀତା- ରାବଣର ଚିତା । ନା ରାମର -ଲଙ୍କାର ଚିତା– ଓଃ ଦିନେ ରାମର ଚିତା କି ହେବ – ରାମର ଚିତା ! ଅନେଇଛ ରାବଣକୁ ! – ପିଶାଚ ରାବଣକୁ ! ରାବଣ ପିଶାଚ ନୁହେଁ ସୀତା । ରାବଣ ମାନବ – ରାବଣ ତମର ଦେହ ସ୍ପର୍ଶ କରିନାହିଁ, ବୈଦେହୀ ! ନାରୀର ସମର୍ଥନ ସମ୍ମତି ବିନା ରାବଣ କାହାକୁ ସ୍ପର୍ଶ କରି ନାହିଁ ଜୀବନରେ ! କିନ୍ତୁ ରାବଣ ମାନବ– ତା'ର ଯେ ପ୍ରେମ କ୍ଷୁଧା ଥିଲା । ପ୍ରେମ କ୍ଷୁଧା ଥିଲା ! x x''

ନାଟ୍ୟକାର ରାବଣକୁ 'ମାନବ' କହିବା ଉଗ୍ର ପ୍ରବୃତ୍ତିକୁ ଅସୁର କହିବା ପରି । ମାନବ ମଧ୍ୟରେ ସେ ଦେବାସୁର କଳ୍ପନାକୁ ଭଲ ପାଆନ୍ତି । କିନ୍ତୁ ରାବଣର ବୁଦ୍ଧି ବିଭ୍ରାଟକୁ ସେ ଜାଣି ପାରନ୍ତି ବିଭିନ୍ନ ପର୍ଯ୍ୟାୟରେ । କେତୋଟି ଦୃଷ୍ଟାନ୍ତ :

ଲଙ୍କା ରାଜପଥରେ ଦୁର୍ଦ୍ଧର୍ଷ ଦୁର୍ମୁଖକୁ କହିଚି – (୧ଅ: ୨ଦୃ:)

''ହଁରେ ବରହ୍ମା ବର ଦେଲା ! ରାଜା ତ କହିଛି ରେ ବର ଫରରେ କିଛି ହେବ ନାହିଁ ! ଆମେ ଯେତେବେଳେ କାମ କରିବୁ, ଦୁନିଆ ବଦଳିଯିବ । କାମ ତ ଏତେ କଲୁ, କାହିଁ ହେଲା କ'ଣ ? ରାବଣ କ'ଣ କରିବରେ ଶୁଣେ ? ତିରଲା କପଡ଼ା ପିନ୍ଧି ନାଚଗାନ କରିବ ଆଉ ଭାତ ବିନା ମରିବ, ଏଇ ଶୁଣ୍ ଶୁଖୁଆ ପାଲଟି ଗଲା – କ'ଣ କଲା ସେ ? ଚୋରି ଡକାଏତି ତ ବନ୍ଦ ହେଲା ନାହିଁ !''

x x ''ଆମେ ପାହାଡ଼ରେ ଥିଲୁ ! ଫଳମୂଳ ଖାଉଥିଲୁ ବସ୍ତିକୁ ଆସି ଦୁଧ ପିଉଚୁ - ପେଟ ପୁରୁଚି ?''

ମନ୍ଦୋଦରୀ (୧ ଅ: ୩ଦୃ:ରେ) ''ପ୍ରତି ମୁହୂର୍ତ୍ତରେ ତ୍ୟାଗ ଓ ସାଧନାରେ ଆର୍ଯ୍ୟ ସଭ୍ୟତାର ସୁରଧୁନୀ ଏ କ୍ଷୁଦ୍ର ଦ୍ୱୀପରେ ବୁହାଇବା ଲାଗି ପ୍ରାଣପାତ କରୁଛନ୍ତି ।''

ଲଙ୍କାର ପଲ୍ଲୀ ପଥରେ କାନୀନ ଋଷିଙ୍କ ଆବିର୍ଭାବ ପରେ (୧ଅ: ୪ଦୃଶ୍ୟରେ) ଧନକୁବେର ସୁରଥଙ୍କ ଘରୁ ଯଜ୍ଞ ସମାପନ କରି ଫେରୁଥିବା କାନୀନ ଋଷିଙ୍କୁ ଦେଖି ରାବଣ କହିଛି : ''ତୁମେ ପୁଣି କିଏ ମହର୍ଷି ? ତପୋବନ ଛାଡ଼ି କେଉଁ ନାରୀର ଅଞ୍ଚଳରେ ଛନ୍ଦି ହୋଇ ରହିବାକୁ ଧାଇଁ ଆସିଛ ଏଠାକୁ ?'' x x

(୧ଅ: ୫ଦୃଶ୍ୟରେ) ମନ୍ଦୋଦରୀ ରାବଣ ପ୍ରତି: ''ଯେଉଁ ରୋଗ ଜୀର୍ଣ୍ଣ କ୍ଷୁଧାତୁର ନାରୀ ମୁଖରେ ଜୀବନର ହସ ଫୁଟାଇବାକୁ ଅଦ୍ଭୁତ ସାଧନା କରିଥିଲ, ଆଜି ତାକୁଇ ତୁମେ ଆସୁରିକ ଶକ୍ତି ବଳରେ ଅତ୍ୟାଚାରିତ କରୁଛ – !''

ରାବଣ ନାରୀର ଅନୁଶାସନ ମାନିବାକୁ ଅସମ୍ମତ ହେବା ଯୋଗୁ ଆର୍ଯ୍ୟ ଆଦର୍ଶର ବିଜୟ ଅସମ୍ଭବ ହୋଇଛି । ମନ୍ଦୋଦରୀର ପ୍ରସ୍ତୁତି ସତ୍ତ୍ୱେ ସମ୍ଭବ ହୋଇନି ରାବଣର ତାମସିକ ତତ୍ତ୍ୱର ପରିବର୍ତ୍ତନ । ନାଟ୍ୟକାର ବିଦ୍ରୂପ ଛଳରେ, ସଂକେତ ଛଳରେ ସମାଜର ବହୁ ସମସ୍ୟାକୁ ସମସାମୟିକତାର ନିଗଡ଼ ଭିତରେ 'ବାଦ' ଓ 'କଳ୍ପନା'ର ପୁଟ ଦେଇଛନ୍ତି । ନାଟକର ସାମୂହିକ ପ୍ରଭାବ ମହାକାବ୍ୟର ଧର୍ମ ରକ୍ଷା କରିଛି । ରାବଣକୁ ନାୟକ ରୂପେ କଳ୍ପନା କରାଗଲେ ମଧ ତା'ର ଦୁଃଖାନ୍ତକ ପରିଣତି ପାଇଁ ମନ୍ଦୋଦରୀକୁ କେହି ଦାୟୀ କରେ ନାହିଁ । ଭାଷା ପାତ୍ରମୁଖୀ ଓ ସଂଳାପଗୁଡ଼ିକ ପ୍ରଭାବଶାଳୀ ହୋଇଥିବାରୁ ଏହା ସମାଦୃତ ହେବା ସ୍ୱାଭାବିକ ।

'ଚିରି ଅନ୍ଧାର ରାତି' ଅନନ୍ତ ପଟ୍ଟନାୟକଙ୍କର ଆଉ ଏକ ନାଟକ । ୧୯୯୦ରେ ଏହା ପ୍ରକାଶ ପାଇଥିଲେ ମଧ୍ୟ ରଚନାକାଳ ୧୯୫୪ । ଦଳେ ଯୁବକଙ୍କ ଅନୁରୋଧରେ ଆଇ.ପି.ଟି.ଏ. ପାଇଁ ଏକ ନାଟକ ଲେଖା ଯାଇଥିଲା ବୋଲି ବହିର ମୁଖବନ୍ଧରେ ଗାଳ୍ପିକ ଅବନୀକୁମାର ବରାଳ କହିଛନ୍ତି । କ୍ଷେତମାଲିକଙ୍କ ଖାମ୍ ଖିଆଲୀ ନୀତି ବିରୋଧରେ କୃଷକମାନଙ୍କ ସଂଗ୍ରାମ ହିଁ ନାଟକର ବିଷୟବସ୍ତୁ । ଓଡ଼ିଶା ଶାଖା ଆଇ.ପି.ଟି.ଏ. ନାଟକର ରିହରସାଲ ଆରମ୍ଭ କରିଥିଲେ କଟକ କାଳିଗଳିସ୍ଥ ଭକ୍ତକବି ମଧୁସୂଦନ ରାଓଙ୍କ ନାତି ଶ୍ରୀ ଅଶୋକ ରାଓଙ୍କ ଘରେ । ଜନତା ଥିଏଟର ପାର୍ଟିର କୁଶଳୀ ଅଭିନେତା ଗୋପାଳ ଘୋଷ, ନିରଞ୍ଜନ ଶତପଥୀଙ୍କ ରାମଚନ୍ଦ୍ର ରାମ, ବିଶ୍ୱଜିତ୍ ଦାସ, ସ୍ୱର୍ଗତ ବିନୟ ପାତ୍ର, ରାଧାରାଣୀ ବୋଷ, ଆଦରମଣି (ଅନୁ) ବରାଳ, ମୋହନ ମହାନ୍ତିଙ୍କୁ ନେଇ ବହୁଦିନ ରିହାରସାଲ୍ ଚାଲିଲା । ଏତିକିବେଳେ ଅନନ୍ତ ପଟ୍ଟନାୟକଙ୍କୁ ଶହୀଦ୍ ଭବନରେ ଅଭିନୀତ କରିବା ପାଇଁ 'ବାନ୍ଦୁ ସମ୍ମିଳନୀରେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କର ଉଦ୍‌ଘୋଷିତ ବିଶ୍ୱଶାନ୍ତି' ଆଦର୍ଶ ଉପରେ 'ପଞ୍ଚଶୀଳ' ଏକାଙ୍କିକା ରଚନା କରିବାକୁ ପଡ଼ିଥିଲା ।

'ଚିରି ଅନ୍ଧାର ରାତି' ରଚନାକାଳର ୩୬ ବର୍ଷ ପରେ ପ୍ରକାଶିତ ହୋଇଥିଲେ ମଧ୍ୟ ସଂଳାପ, କାହାଣୀ, ସଂଗୀତ ଓ ମଞ୍ଚ ପରିକଳ୍ପନା ବିଚାରରୁ ଏହାର ସାର୍ଥକତା ଅଛି ।

ନାଟକ ଆରମ୍ଭ ହୋଇଛି ଏକ ନିପଟ ମଫସଲ ଦୃଶ୍ୟରୁ । ତହସିଲଦାରଙ୍କ ଲୋକ ଜମି ନିଲାମ ପାଇଁ ନୋଟିସ୍ ବୁଲଉଛି । ଅନ୍ଧାର ରାତି ଘୋଟି ଆସିଛି ଜଣେ ଗାଉଁଲୀ ସ୍ତ୍ରୀଲୋକ ଜୀବନରେ । ପରେ ପରେ ଖଜଣା ଦେଇପାରି ନ ଥିବା ଆଉ କେତେକ ଗ୍ରାମବାସୀଙ୍କ ଜୀବନରେ । ଗ୍ରାମ୍ୟ ପରିବେଶକୁ ନିଖୁଣ ରୂପ ଦେଇଛନ୍ତି ନାଟ୍ୟକାର । ଟାଉଟର ପଞ୍ଚାଏ ଏପଟ ସେପଟ ହୋଇ ଦୁଇ ପଇସା ପୈଠ କରିବା ପାଇଁ ଭୁଆଁ ବୁଲାଉଛନ୍ତି । ସଖିବୋଉ, ଭୀକୁ, ଭାସିଆ, ପାଲୁଙ୍କି, ଦୀନା ଏବଂ ନନ୍ଦିଆ ଭଳି ଚରିତ୍ର ହୀନିମାନ କରିବାର ଅନାବଶ୍ୟକ ପଦକ୍ଷେପକୁ ବିରୋଧ କରିଛନ୍ତି । ଅଞ୍ଚଳ ଅଧିକାରୀ ଧର୍ମାନନ୍ଦ, ଜମିଦାର ରାଜେନ୍ଦ୍ର, ତାଙ୍କ ପିଆଦା ରତନା ଓ ସହଧର୍ମିଣୀ ଜାହ୍ନବୀ, ଝିଅ ମମତା ଭିନ୍ନ ଦିଗରେ ପଦଚାରଣା କରୁଛନ୍ତି । ଗରିବର ସମସ୍ୟା ଏବଂ ଥିଲାବାଲାର ସମସ୍ୟା ଭାରତୀୟ ପୃଷ୍ଠପଟରେ ସାର୍ବଜନୀନ ଭାବେ ଜମିଦାରୀ ପ୍ରଥାର ଅତ୍ୟାଚାରୀ ଆକ୍ରୋଶକୁ ମୂଳପୋଛ କରିବା ପାଇଁ ପ୍ରରୋଚିତ କରିଛି । ସେ ଭାବକୁ ତୀକ୍ଷ୍ଣ ରୂପ ଦେବା ପାଇଁ ଗ୍ରାମୀଣ ଭାଷା ପ୍ରୟୋଗରେ ଯେପରି ସିଦ୍ଧହସ୍ତ (ପୃ:୧୫ ମହାପାତ୍ର – ''ହେଇ କିରି ତ ପାରୁନି । ଏଇ ଗାଁ ଇସ୍କୁଲଟି ସେକ୍ରେଟାରୀ କିଏ ହେବନା

ମହାପାତ୍ରେ । କିରେ ମୋଠି କିଆଁ ନାଖ ମରିଛି । ତେବେ ହାକିମ ହୁକୁମା ଖିଜିମତ ।) (ପୃ:୧୬, ''ଆଃ ଆଉ ଦୁଇ ଦିଅ ହେ, ଦିଅ । ଆଉ ଆଣୁନ । ଗୋଟାକରୁ କେତେ ଦୁହିଁବ । ଆରେ ଭାସିଆ ! ଆରେ ରଥିଆ ମଁ ! ହେଇ କହୁ ନ ଥିଲ କିରେ କହୁନ । ମୁଁ କ'ଣ ତୁମ ପାଟି, ବାଜୁଥିବି ? ଗହିରୁ ଗହିର ପାଟକୁ ପାଟ ଜମି ।'') ଉଚ୍ଛକିତ ଆବେଗରେ ଧର୍ମାନନ୍ଦ ମୁହଁରେ (ପୃ:୧୩୬, ''ଘରେ ମୋର ସ୍ତ୍ରୀ ପ୍ରଣୟିନୀର ଅଭାବ ନାହିଁ ମୋର । ନାରୀର ଘର୍ମରେ ଦେହ ମୋର ନିଷିକ୍ତ ହେଉଛି, ଆଉ ତୁମେ, ତୁମେ ମୋର ଅନୁଯୋଗର ନୀରବ ଉପେକ୍ଷା ।'') ପରି ପରିବେଶମର୍ମୀ ସଂଳାପ ସଂଯୋଜନାରେ ସିଦ୍ଧହସ୍ତ । ନାଟକର ଚରିତ୍ର ସଂଳାପକୁ ଆତ୍ମପ୍ରକାଶର ଗୌଣ ଦିଗ ଭାବେ ନାହିଁ ।

ସଖୀ ବୋଉର ସଖୀ ପାଇଁ ଜୀବନସାଥୀ ଖୋଜି ଦେବାର ଉଦ୍‌ବେଗ ଏବଂ ରାଜେନ୍ଦ୍ରଙ୍କ ମମତାର ଭବିଷ୍ୟତ ସଂପର୍କରେ ଉଦ୍‌ବେଗ ନାଟକରେ ପ୍ରାୟ ବିରୋଧାଭାସ ସୃଷ୍ଟି କରିଛି । ଅତି ବାସ୍ତବତାର ଚିତ୍ରଣରେ ସେ ଅନନ୍ୟ, ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ଧୁରୀଣ । ତେଣୁ ପାରମ୍ପରିକ ରୀତିରେ ଦୋଷ ତ୍ରୁଟିରୁ ମାର୍ଗ ସୁଧାରି ଚାଲିଯିବା କିମ୍ବା ଅନୁତାପ ଦ୍ୱାରା ମନ ନିର୍ମଳ କରିବାକୁ ଆଜିର ମଣିଷ ସମ୍ମତ ବୋଲି ଅନନ୍ତ ବୁଝିବାକୁ ନାରାଜ । ହୁଏତ 'ଚିରି ଅନ୍ଧାର ରାତି'ର ସଫଳତା ସଂପର୍କରେ ଏହାହିଁ ଯୁକ୍ତି ।

# ଶିଶୁ ସାହିତ୍ୟ ଓ ସଂପାଦନା

Sound of vernal showers
on the twinkling grass,
Rain– awaken'd flowers–
All that ever was
Joyous and clear and fresh - thy music doth surpass :

**– Shelley**

ଶ୍ରୀ ଅନନ୍ତ ପଟ୍ଟନାୟକଙ୍କର ଶିଶୁ ସାହିତ୍ୟ ପ୍ରତି ଅବଦାନ ବେଶ୍ ପ୍ରଭାବଶାଳୀ । ଶୈଳୀ ତଥା ବିଷୟବସ୍ତୁରେ ନୂତନତ୍ୱ ରହିଛି । ଶିଶୁ ସାହିତ୍ୟ ସମିତି ସହିତ ତାଙ୍କର ଦୀର୍ଘ ସଂପର୍କ ଯୋଗୁଁ ସେ ଶିଶୁ ସାହିତ୍ୟ ରଚନା କ୍ଷେତ୍ରରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲେ । ବିଜ୍ଞାନ ସମ୍ବନ୍ଧୀୟ ଲେଖା, ଜାତୀୟ ଭାବନା ସମ୍ବଳିତ ଗଦ୍ୟ ଓ କବିତା, ପ୍ରକୃତିକୁ ଦେଖି ଜୀବନ ସୁମହାନ କରିବା ଓ ଆନନ୍ଦ ସଂଧାନ କରିବାର ଧାରଣା ଉପରେ ଆଧାରିତ ରଚନାବଳୀ ଶିଶୁ ସାହିତ୍ୟ ପାଠକ ପାଠିକାଙ୍କୁ ଉତ୍ସାହିତ କରିଥିଲା ଅନନ୍ତଙ୍କ ସୃଜନ ସ୍ୱପ୍ନରେ । ତାଙ୍କ ନିରଳସ ସାଧନା 'ଶିଶୁଲେଖା' ପତ୍ରିକାଟିକୁ ସର୍ବଜନାଦୃତ କରିଛି । କ୍ରମେ ସମାଜ ସଚେତନ ହେଉଥିବା କିଶୋର କିଶୋରୀଙ୍କ ମନରେ ସର୍ଜନାତ୍ମକ ଅନୁଚିନ୍ତାର ଗୁଞ୍ଜନ ତୋଳିବା ପାଇଁ ସେ ପ୍ରତିଭାବାନ୍ ଲେଖକ ଲେଖିକାଙ୍କ ସାହାଯ୍ୟ ନେଉଥିଲେ । ଆତ୍ମବିଶ୍ୱାସରେ ଅଟଳ ରହି ସେ କୁସଂସ୍କାର ଓ ସାଂସ୍କୃତିକ ବିଦ୍ୱେଷ ବିରୋଧରେ ସଂଗ୍ରାମ କରିଥିଲେ । ପତ୍ରିକାଟିର ମୁଦ୍ରଣ ପରିପାଟୀ ଓ

ଚିତ୍ରସଜ୍ଜା ଆକର୍ଷଣୀୟ କରିବା ପାଇଁ ସେ ପ୍ରଥମ ପର୍ଯ୍ୟାୟରେ ଆପ୍ରାଣ ଚେଷ୍ଟା କରିଥିଲେ । ଏଥିପାଇଁ ଶିଳ୍ପୀ ଅସିତ୍ ମୁଖାର୍ଜୀଙ୍କ ଅବଦାନ ସ୍ମରଣୀୟ ।

ଶିଶୁ ମନରେ ସାମାଜିକ ଦାୟିତ୍ୱ ଓ ବୈଜ୍ଞାନିକ ଅନୁସନ୍ଧିତ୍ସା ସମନ୍ୱିତ କରିବା ପାଇଁ ଏବଂ ସେମାନଙ୍କୁ ଆଧୁନିକ ଭାରତର ନାଗରିକ ରୂପେ ଗଢ଼ିବା ପାଇଁ ଶିଶୁ ସାହିତ୍ୟ ସୃଷ୍ଟିକୁ ସେ ଶକ୍ତିଶାଳୀ ମାଧ୍ୟମ ମନେ କରୁଥିଲେ । ମଝିରେ ମଝିରେ ସେ ନିଜେ ପତ୍ରିକାରେ ନିବନ୍ଧ, ପଦ୍ୟ ଓ କାହାଣୀ, ବିଦେଶୀ ଭାଷାରୁ ଅନୁବାଦମାନ ସ୍ଥାନିତ କରି ଭାବନାର ଦିଗନ୍ତ ବିସ୍ତାରିତ କରିଥିଲେ । ତାଙ୍କର ସାବଲୀଳ ଭାଷା ଓ ନୂତନ ବକ୍ରିମା ବେଶ୍ ଜନପ୍ରିୟ ହୋଇଥିଲା ।

ତାଙ୍କର କେତୋଟି ଶିଶୁ କବିତା ଏଠାରେ ଆଲୋଚନା କରାଯାଉ । 'କୁନ୍‌କୁନି' ଶୀର୍ଷକ କ୍ଷୁଦ୍ର କଳେବର ବିଶିଷ୍ଟ କବିତା ବହିରେ ଥିବା 'ଲାଲୁ କହେ ଲାଲା'ରୁ ଉଦ୍ଧୃତାଂଶ :

ଲାଲୁ କହେ 'ଲାଲା ଲାଲା'
ଲୁଲୁ କହେ 'ଲୁ' ।
ସନ୍ ସନାସନ୍ ବହିଲା ବାଆ
ନଈରେ ସୁଅ ସୁ !
ନାଇଁରେ ନାଇଁ, ସୂର୍ଯ୍ୟ ନାଇଁ !
ବିଜୁଳି ମାରେ, ସାଇଁ ସାଇଁ !
ଝମ୍ ଝମାଝମ୍ ବର୍ଷା ଝରେ
ଘରକୁ ଦେବା ଛୁ !
ଲାଲୁ କହେ 'ଝପଟି ଯିବା' !
ଲୁଲୁ କହେ 'ହୁଁ' ।

ବିଜୁଳିର ଝଲକରେ ଶିହରି ଉଠି ଘରକୁ ଫେରିବା ପାଇଁ ଚାହୁଁଥିବା ପିଲାମାନେ ବେଙ୍ଗ, ମାଛ ଓ ସଂଗୀତର ସାଂକେତିକ ପ୍ରକାଶରେ ନୂଆ ଅନୁଭବ ସାଇତିଛନ୍ତି ମନ ତଳେ । ତାରାର ଦୀପଶିଖା ଜଳି ଉଠିବା ପରେ ଦୂରରୁ ମେଘ ରଡ଼ି ଶୁଭିଛି । ରାସ୍ତାରେ 'ଟବ୍ ଟବାଟବ୍' ପାଣି ସୁଅ ଭରି ଯାଇଛି । ଏତିକିବେଳେ ଶଙ୍ଖଧ୍ୱନି ଶୁଭିଛି :

''ଟପ୍ ଟପାଟପ୍ ପତର ଝଡ଼େ
ବାଉଁଶ ବଣ କେଁ !
ଚକ୍ ଚକାଚକ୍ ଚକୁଳି ଡାକେ
କରେଇ କୋଳେ ଚେଁ !''

ସଂପୂର୍ଣ୍ଣ ଭାବେ ଗାଉଁଲୀ ପରିବେଶର ମାଧୁର୍ଯ୍ୟ ସୃଷ୍ଟି କରିଛି । ଅରଖ ଫୁଲ ପାଖୁଡ଼ାରେ ଝରି ପଡୁଥିବା ବର୍ଷା ବିନ୍ଦୁ 'ଖୁଁ ଖୁଁ' ଶବ୍ଦ ପ୍ରତିଧ୍ୱନିତ କରିଛି । ଲାଲୁ ଯେତେବେଳେ ଲାଲାକୁ ଘରକୁ ଫେରିବାକୁ ଡାକିଛି ନଈରେ ଫୁଲି ଫୁଲି ଉଠୁଥିବା ପାଣିସୁଅ ଜୀବନର ପ୍ରବାହ ସଂପର୍କରେ ସୂଚନା ଦେଇ ଉଡ଼ି ଯାଉଥିବାର କବି ବର୍ଣ୍ଣନା ଦେଇଛନ୍ତି । ପ୍ରକୃତିର ପ୍ରବାହ ମନରେ ଯେଉଁ ସଚେତନତା ସୃଷ୍ଟି କରିଛି ତାହା ୱାର୍ଡ଼ସ୍‌ୱାର୍ଥଙ୍କ ସୌନ୍ଦର୍ଯ୍ୟପ୍ରିୟତାର ଆକାଂକ୍ଷା ସଂସ୍ମରିତ କରେ ।

'ଛାଇ ଛନ୍ ଛନ୍' କବିତାରେ କବି ଆଖିଦୁଶିଆ ଖୁସିର ବର୍ଣ୍ଣନା ଦେଇଛନ୍ତି । ଏଣିକି ତେଣିକି ଚାହିଁ ସେ ଗୋଟିଏ ଫୁଲଗଛ ତଳେ ବସିଚି । ଖେଳସାଥୀମାନଙ୍କୁ ସୁଷୁରି ଫୁଙ୍କି ଡାକିଛି । ସେମାନେ ଗୋଟିଏ ପରେ ଗୋଟିଏ ପହଞ୍ଚିଛନ୍ତି :

ମୁହଁ ଚାଟି ଚାଟି,
ମେଲାଇ ପାଟି,
ପୁଣି ଥିଲା କାହିଁ ଅଇଲା ଧାଇଁ;
ଅଳସେଇ ଥରେ ମାଇଲା ହାଇ,
''ମ୍ୟାଉଁ – ମ୍ୟାଉଁ !''
ଛେଉକି ସେ ତା'ର କାହାକୁ ଡର ?
ହାତକେ ଛେନା ତା' ହାତରେ ସର,
ଯାଚି ଯାଚିକା ତା',
ନାଚି ନାଚିକା, କହିଲା – 'ଖାଉଁ !'
ଚଉକି ଟେବୁଲ୍ ଆଇନା ଟପି
କାହିଁ ଶୋଇଥିଲା ଧାଇଁଲା ପପି ।
ମାଉଁସ ପୁଳିଏ ମୁହଁରେ ଧରି,
କୁଉଁ କୁଉଁ ହୋଇ, କଥା ନ ଗପି
କହିଲା – 'କ୍ୟାଉଁ !'
ଭାଡ଼ି ତଳେ ଥିଲା ସତେ କି ରୁଷି –
ଅଇଲା ମୂଷି ।
ଲହୁଣୀ ଚୋପିକ, ବାଦାମଟିଏ
ନଖମୁନେ ଧରି ଡାକିଲା ସିଏ,
– ଟୁକୁରୁ ଟୁକ୍ !'

କାକର ଟିକିଏ ପରରେ ଆଣି
କଙ୍କି ରାଣୀ,
ଡେଙ୍ଗାଁ ଉଡ଼ିଲା;
ଫୁକୁରୁ ଫୁକ୍ ।
ବେକରେ ଗୁଡ଼ାଇ ମୀନଗୁ ମାଳେ,
ତାକ୍ ଧିନ୍ ଧିନ୍ ନାଚି କି ତାଳେ,
ଅଇଲା ନେଉଳ
କହିଲା, ଚିଇଁ ।
ଟିଇଁଟିଆଁ କାହୁଁ ଆକାଶୁ ଖସି
ଖଟେଇ ହେଲା କି ଟିଇଁ ଟିଇଁ ।

ବେଲଖଣ୍ଡେ ରେକୁଟୁ ଥିବା ମାଙ୍କଡ଼ ଡେଇଁ ଡେଇଁ ଆସିଲା । ଖିଇଁ ଖିଇଁ ଖଟେଇ ହେଲା । ରାଉରାଉ ଡାକରେ କାଉଟିଏ ଥଣ୍ଟରେ ନାଲି ଟହ ଟହ କମଳା ନଚାଇ ନଚାଇ ଆସିଲା । ବଗଟିଏ ଡଗ ଡଗ ହୋଇ ନଳିଗୋଡ଼ିଆ ଚାଲିରେ ପହଞ୍ଚିଲା । ରଙ୍ଗି ଗୁଡ଼ି ଉଡ଼ାଇବା ପରି "ହଳଦିଆ, କଳା, ଶାଗୁଆ, ନେଳି / ଛିଟି ଛିଟିକିଆ ପଣତ ମେଲି," ପ୍ରଜାପତିଟିଏ ଅଇଲା । ମିଠା ମିଠା ଗୀତଟିଏ ଏତିକିବେଳେ ଯୋଡ଼ିଦେଲା ତୋଟା ଗହଳରୁ କୋଇଲି ରାଣୀ । ସଭିଏଁ ମିଳି ଖୁସିର ସୁଷୁରୀ ସ୍ୱରେ ବେଦମ୍ ନାଚିଲେ । ସେମାନଙ୍କ ନାଚର କାବ୍ୟିକତା ବୁଝାଇବା ପାଇଁ କବି 'ଘିର୍ ଘିର୍' ଶବ୍ଦ ବ୍ୟବହାର କରିଛନ୍ତି । ଏହା ଚକ ବୁଲିବାର ସଂକେତ ମନକୁ ଆଣେ । ପଶୁପକ୍ଷୀଙ୍କ କ୍ରୀଡ଼ା ଚକ୍ର ରଚନା କବିଙ୍କର ଶିଶୁ ସୁଲଭ ଚପଳତାରେ ଜୀବନ ଦର୍ଶନର ବ୍ୟଞ୍ଜନା ଭରି ଦେଇଛି । 'ନ ମାନି ପଥର, ନ ମାନି ଗଛ' ଜଡ଼କୁ ଘୂର୍ଣ୍ଣିତ କରିବା ପରି କଳ୍ପନାରେ ବର୍ଣ୍ଣାଢ଼୍ୟ ।

ଶବ୍ଦର ଅର୍ଥପୂର୍ଣ୍ଣ ଜାଦୁଖେଳ ଧରାପଡ଼େ ଅନନ୍ତ ପଟ୍ଟନାୟକଙ୍କର ଆଉ ଏକ ଶିଶୁ କବିତା 'ଖରା ନାଇଁ ତରା ନାଇଁ'ରୁ । 'ଖରା ନାଇଁ /ତରା ନାଇଁ / ନୁହେଁ ପାଗ ଝଡ଼ିଆ'ରେ, 'ତୋଟା ତଳେ / ଛାଇ ତଳେ / ଘାସେ ଭରା ପଡ଼ିଆ'ରେ ଡୁଡୁ ଖେଳ ବଢ଼ିଆ ହେବ ବୋଲି ଡକାଡକି ହୋଇ ଥୋକେ ପିଲା ପହଞ୍ଚିଛନ୍ତି । ପାହି କାଟିଛନ୍ତି । ଧାଡ଼ି ହୋଇ ଦୁଇପଟେ ଛିଡ଼ା ହୋଇଛନ୍ତି । କବିଙ୍କ ଭାଷାରେ ଖେଳ ବର୍ଣ୍ଣନା ବଡ଼ ହୃଦୟସ୍ପର୍ଶୀ ହୋଇଛି :

ଦୁଲୁକାଇ ଭୂଇଁଟି
ଯାଆ, ପାହି ଛୁଇଁଟି

ଚଢ଼େଇର ଡେଣା ପରି
ନଚାଇ ତୋ' ବାହାରେ ।
ଯାଆ ଛୁଟି ଲଢ଼ିଆ !
ଘିରି ଘିରି, ଘାଉଁରେଇ
'ଆରପଟ ଖେଳାଳି',
ଥିରି ଥିରି ବାଆଁରେଇ
ଛକି ଛକି ଓଗାଳି
ଖେଳ ଦେଇ ଭୁଲାଇ
କୋଣୁ କୋଣେ ବୁଲାଇ
ଆରପଟ ଖେଳାଳିର
ବଳ ଦିଏ ହୁଗାଳି
ବାଗ ଦେଖି ଜଣେ ଅଧେ
ମାରି ବେଗେ ତଡ଼ିଆ ।

ତାଙ୍କ 'କୁନି ଲତାଟି' ଶିଶୁକୁ ଉଦ୍ଭିଦ ଜଗତ ସହିତ ଅନ୍ତରଙ୍ଗ କରିବା ବ୍ୟତୀତ ମାଟିର ଜୀବନ ଛନ୍ଦ ସହିତ ସଂପୃକ୍ତ କରିଛି । ପ୍ରକୃତି ଓ ଶିଶୁର ନିଷ୍କପଟ ସମ୍ବନ୍ଧ ଅଛ ଦାର୍ଶନିକତାକୁ ଲୁଚାଇ ରଖିଛି କାବ୍ୟ ପଂକ୍ତିରେ । ଗଛଟିର ସବୁ ଅଂଶ ମଣିଷର ପରିବର୍ତ୍ତନଶୀଳ ଅବସ୍ଥାରେ (କାଠଚେକା ଡଙ୍ଗା ହେବା ପର୍ଯ୍ୟନ୍ତ) ବ୍ୟବହୃତ ହେଉଥିବାର କାହାଣୀ ମନେ ପଡ଼ିଯାଏ ଅନନ୍ତ ପଟ୍ଟନାୟକଙ୍କ ଏଇ କବିତା ପଢ଼ିବା ବେଳେ । କୁନି ପିଲା ଓ କୁନି ଲତା କଥା ହୁଅନ୍ତି କବିତାରେ –

''କୁନି ଲତାଟି ମୋ, କୁନି ଲତାଟି !
ତୁନି ତୁନି ମୋତେ କହ କଥାଟି,
କାହିଁଥିଲୁ ତୁହି କାହୁଁ ଅଇଲୁ
କୁଆଁ ମେଲି ମେଲି ମୋତେ ଚାହିଁଲୁ ?
କିଏ ତୋର ମା' ? କାହିଁ ଗାଆଁ ଲୋ
କେଉଁଠି କାହାଠୁ, କ୍ଷୀର ଖାଇଲୁ ?''
''ସୁନା ଭାଇଟି ମୋ, ସୁନା ସାଥୀଟି !

କାହିଁ ବିତିଗଲା କେତେ ରାତିଟି
ଭୂଇଁ ମାଆ କୋଳେ ଶୋଇ ଶୋଇକା !
ମାଟି-ପଣତେ ତା' ଛାତି ଭିତରେ
ଢାକିଛୁକି ମୋତେ ଖରା ଶୀତରେ,
ରଖିଥିଲା କ୍ଷୀର ଖୋଇ ଖୋଇକା ।''

କୁନି ଲତା ଉତ୍ତର ଦେଉଛି ଶିଶୁକୁ – ଉଦୟ ସୂର୍ଯ୍ୟ ତାକୁ ନିଦରୁ ଉଠାଇ ଦେଇଛି । ଶିଶିର କଣା, ଝିରି ଝିରି ବାଆରେ ସେ ଦୋଳୁଚି । ତା'ର ଜନ୍ମ ହେବା କାହାଣୀଟି ନିଜ ଭାଷାରେ–

ଫୁଟି ଡିମ ପରି ବୀଜ ଖୋଳରୁ
ମୁହଁ କାଢ଼ିଲି ମୁଁ ମାଆ କୋଳରୁ
ହସି ବାହାରକୁ ଦେଲି ଚାହିଁରେ ।
କାହୁଁ ଉଡ଼ିଆସି ମୋର କଡିଟି
ଫୁଲ ଛୁଇଁ ଆଉ ପ୍ରଜାପତିଟି,
ଗୀତଟିଏ ବସି ଦେଲା ଗାଇରେ ।
''କୁନି ଲତାଟି ମୋ, କୁନି ଲତାଟି,
କେଡ଼େ ମଜା ଲାଗେ ତୋର କଥାଟି ।
ମୋ ପରି ତୁ କି ବୁଲି ଯାଉନା ?
ନାଚି କୁଦି କେବେ କାହିଁ ଧାଉଁନା ?''
''କୁନା ଭାଇଟି ମୋ, କୁନା ଭାଇଟି
ଆଖି, କାନ, ପାଟି ମୋର ନାହିଁଟି,
ଛୁଇଁ ଦେଲେ ମୋତେ ସବୁ ବୁଝେରେ
ରହିଥାଏ ମୁହିଁ ଏକ ଥାନରେ,
ମୂଳଟି ତ ମୋର ମାଆ–ପ୍ରାଣରେ,
ଦୁଃଖ ପାଇଲେ ମୁଁ ଆଖି ମୁଦେରେ ।''

ପରବର୍ତ୍ତୀ ପ୍ରଶ୍ନର ଉତ୍ତରରେ ଲତା କହିଛି, ପତ୍ରକଣାରେ ସେ ପବନ ନିଏ । ମାଆ ଦେହ ଭିତରେ ରସଧାର ଭରିଦିଏ । ଖରା ଛିଟିକା ପତ୍ରରେ ରଖି ସେ ରୋଷେଇ କରେ । ଫୁଲ ଫୁଟାଏ ବର୍ଷା ଛାଟରେ । ମାଆ କୋଳରେ ସେ ଲଟାଇ ରହେ । ଶିଶୁର ଶେଷ ପ୍ରଶ୍ନ

ବଡ଼ ଭୟଙ୍କର । ସେ ଲଟାକୁ ତା'ର ପ୍ରକୃତ ଉପକାର କ'ଣ ବୋଲି ପଚାରିଛି, କହି ନ ପାରିଲେ ଛିଣ୍ଡେଇ ଦେବାକୁ ଭୟ ଦେଖେଇଛି । ଉତ୍ତରରେ କୁନି ଲତାର ଶେଷପଦ ଗୀତ :

''ଆହା, ଆହା ! ମୋତେ ଛିଡ଼ା ନାହିଁରେ
ସୁନା ଭାଇରେ ।
ଜୀବନଟି ମୋର ପର ପାଇଁରେ,
ମୋଓ ଠାଇଁ ଟିକେ ରଖ ସରାଗ ।
ଦେଖିବୁ ମୁଁ ଯେବେ ବଡ଼ ହେବିରେ,
ତୋତେ ମୁଁ ହସର ଫୁଲ ଦେବିରେ,
ବୋଲି ହେଉଥିବୁ ତା'ର ପରାଗ ।''

ନୀତିଶିକ୍ଷାର ନିଗଡ଼ ଭିତରେ କବିତାଟି ଚାପି ହୋଇ ରସୋଲ୍ଲାସ ହରାଇ ନାଇଁ କେଉଁଠି । ପ୍ରେମରେ ଭରି ଦେଇଛି ଶିଶୁର ହୃଦୟ । ମାଟି ପ୍ରତି, ସୂର୍ଯ୍ୟ ପ୍ରତି, ଆକାଶ ପ୍ରତି, ମେଘମାଳା ପ୍ରତି ଅନୁରାଗ ସୃଷ୍ଟି କରିବାର କାବ୍ୟିକ ଆବେଗ ରହିଛି ଛନ୍ଦମଧୁର ପଂକ୍ତିରେ । "trailing clouds of glory"ର ପ୍ରତିଧ୍ୱନି ଆପେ ଆପେ ଭାବାନ୍ତର ଆଣିଛି ବା ଶିଶୁ ମନରେ ।

''ଟରେ ଟକ୍କା ଟରେ ଟକ୍କା' କବିତାରେ ଶିଶୁମାନଙ୍କ ପାଇଁ ଜଣେ ଟେଲିଗ୍ରାଫ୍‌ବାଲାର ଅନୁଭୂତି ଛନ୍ଦମଧୁର ପଦରେ ବଖାଣିଛନ୍ତି –

– ''ଟରେ ଟକ୍କା, ଟରେ ଟକ୍କା !''–
ଡାକ ବାବୁ ଖଟି ଖଟି
ବସି ଟିକେ ମାରେ ଥକ୍କା ।
– ''ଟରେ ଟକ୍କା, ଟରେ ଟକ୍କା !''–

ବମ୍ବେ, କଲିକତା, ଦିଲ୍ଲୀ ଓ କଟକରୁ ତାରେ ଟକ୍କା ବାର୍ତ୍ତା ବିନିମୟ କରିବାର ଲଘୁ କଥନିକା ରହିଛି ଶିଶୁଙ୍କ ମନୋରଂଜନ ପାଇଁ । କବିତାଟିର ଶେଷକୁ ଟେଲିଗ୍ରାଫ୍‌ବାଲା କ୍ଲାନ୍ତ ହେବାରୁ ତା'ର ମନ୍ତବ୍ୟ ଉଦ୍‌ଭାବନକୁ ବ୍ୟଙ୍ଗ କରିଛି :

ଡାକବାବୁ 'ହନୁମାନ'
ଖଟି ଖଟି ଦିନମାନ
'ଲାଞ୍ଜଟା ପିଟି ପିଟି'
ଖାଲି ହୁଏ ଖିଟି ଖିଟି–
କାହିଁ ଟିକେ ତର ପାଏ ?

''ଟରେ ଟକ୍କା', 'ଟରେ ଟକ୍କା'
'ତା'ରି କଳ' ବାଜୁଥାଏ ।
ଟରେ ଟକ୍କା, ଟରେ ଟକ୍କା
'କାହିଁ ସେଇ ପାଜି ଆଜି,
କାହିଁ ସେଇ 'ଏଡିସନ୍' ?''
ଡାକବାବୁ ମୁଣ୍ଡଟା ଘୂରିଯାଏ ବନ୍ ବନ୍ !
ପାଆନ୍ତା କି ଦେଖା ତା'ର,
ଦିଅନ୍ତା ସେ ତାକୁ ଧକ୍କା ।
ଖାଆନ୍ତା ସେ ବୁଲି ବୁଲି
ଯେତେ ବେଲ, ଯେତେ ମକ୍କା
– ଟରେ ଟକ୍କା, ଟରେ ଟକ୍କା ।

କଳ୍ପନାର ରଙ୍ଗୀନ ଝଲକ ଖେଳି ଯାଇଛି ଗଣ୍ଡାର ଓ କଙ୍ଗାରୁର ତା'ର ବାର୍ତ୍ତାରେ, କବିତାର ମଧଭାଗରେ ଭାଡ଼ି ସଙ୍ଗାରୁ ବାଛିବୁଛି ଘାସ ମୁଠେ ପଠାଇବାକୁ ବାର୍ତ୍ତା ଦେଇଛି ଗଣ୍ଡାର । କଙ୍ଗାରୁ ବେକମୂଳେ ଦିନ ରାତି ପାଣି ଖାଇ ରକ୍କା ଲାଗିଛି କହିବା ବେଳେ କବି ପରୋକ୍ଷରେ ଟେଲିଗ୍ରାଫ୍ ତା'ର ପ୍ରତି ସମ୍ବେଦନା ସୂଚାଇଛନ୍ତି । ଏହା କାବ୍ୟ କୌଶଳରେ ହାସ୍ୟ ବ୍ୟଞ୍ଜନା ।

ବର୍ଷା ବିନ୍ଦୁଗୁଡ଼ିକର 'ଟୁପୁରୁ ଟୁପୁ' ସଂଳାପ ବୁଝାଇବାକୁ ଯାଇ କବି ପାଣି ଫୋଟକୋକୁ ପତ୍ରଟକି ସହିତ, ପତ୍ରଟକିକୁ ପତ୍ରଡଙ୍ଗା ସହିତ, ପତ୍ରଡଙ୍ଗାକୁ କାଗଜ ଡଙ୍ଗା ସହିତ କ୍ରମାନ୍ୱୟରେ ରପକଳ୍ପ ପ୍ରସାରଣ ଶୈଳୀରେ ତୁଳନା କରିଛନ୍ତି । ସେଇପରି ବେଙ୍ଗ, କଙ୍କି, ଝିଣ୍ଟିକା ଗତିର ସଂକେତ ସ୍ପଷ୍ଟରୁ ସ୍ପଷ୍ଟତର କରିଛନ୍ତି :

ସୁଲୁସୁଲିଆ ପଡର ନାଆ
ନାଇଁରେ ତା'ର ଛାତ,
ଝିଣ୍ଟିକାଟି, ଗୋଡ଼ରେ ତା'ର
ମାରୁଚି ବସି କାତ !

ଶିଶୁଙ୍କ ପାଇଁ ଲେଖିବା ବେଳେ ସେ କବିତା ରଚନାର ସବୁ ବିଭାବ ପ୍ରତି ସର୍ବଦା ସଚେତନ । ତେଣୁ ଯାତ୍ରା ଶେଷ ହୋଇଛି କ୍ୟାରମ୍ ଡଟ୍ କେତୋଟି ଗଡ଼ି ଯାଉଥିବା ବେଳ, ରୂପକଳ୍ପର ଅଙ୍କ ସଂକେତରେ ।

''ମାଆ ଲୋ ମାଆ'' କବିତାରେ ଶିଶୁର ମହାଶୂନ୍ୟ ଯାତ୍ରା ବର୍ଣ୍ଣନା କରାଯାଇଛି । ଧରଣୀରାଣୀ ସୂତାଖିଏରେ ତାକୁ ବାନ୍ଧି ରଖିଛି । ସିଡ଼ି ତିଆରି ହୋଇଛି ମାଟିରୁ ମେଘ, ମେଘରୁ ଉଡ଼ାଜାହାଜ ଡେଇଁ ନୀଳ ଆକାଶରେ ବିଚରଣ ପାଇଁ । ମହାଶୂନ୍ୟ ଯାତ୍ରାର ପୋଷାକ ପର୍ଯ୍ୟନ୍ତ କବିତାରେ ବର୍ଣ୍ଣିତ ହୋଇଛି । ଆବେଗରେ ଉଚ୍ଚରୁ ଉଚ୍ଚତର ସୋପାନକୁ ଉଡ଼ି ଯାଉଥିବା ଶିଶୁର ସମ୍ବୋଧନରୁ ତା'ର ମନୋଭାବ ସୂଚିତ ହୋଇଛି । ପାରମ୍ପରିକ ରୀତିରେ ମାଟିରେ ସରଗ ଗଢ଼ିବାର ବୀରପୁଅ ।

'ଚଢ଼େଇରେ ନେଳି ଚଢ଼େଇ' ଶିଶୁମାନଙ୍କ ପାଇଁ ଗୋଟିଏ ଅର୍ଥ ବୁଝାଉ ଥିବାବେଳେ ବଡ଼ଙ୍କ ପାଇଁ ଆଉ ଏକ ଅର୍ଥରେ ଲେଖା ଯାଇଥିବା ଭଳି ମନେହୁଏ । ଶିଶୁ ଚଢ଼େଇକୁ ସମ୍ବୋଧନ କରିପାଉଛି :

ଚଢ଼େଇରେ ନେଳି ଚଢ଼େଇ !<br>
ଆଜି କେଉଁ ରାଇଜରୁ ଅଇଲୁ ?<br>
ତୋର ନାଲି ଗୁଲୁ ଗୁଲୁ ମୁହଁରେ<br>
କାହୁଁ କାଇଁଚି କାକୁଡ଼ି ତୋଳି କି,<br>
ତହିଁ କାକର ଟୋପାଏ ବୋଳି କି<br>
କେତେ ବୁଲୁ ବୁଲୁ ଗୀତ ଗାଇଲୁ<br>
କେଉଁ କୁଲୁ କୁଲୁ କଥା ପାଇଲୁ ?

''ମୁଁ ଯେ ରହିଥିବି ତୋ'ର ସାଥିରେ / ଯେତେ ଉଆଁସ ପୁନେଇଁ ରାତିରେ'' କବିତାର ଗାମ୍ଭୀର୍ଯ୍ୟ ସଂପର୍କରେ ଅବହିତ କରେ । ସୌନ୍ଦର୍ଯ୍ୟବତ୍ତା ସହିତ ସଂପର୍କିତ ଏଇ ମାଟିର ବିହଙ୍ଗ ଫଳ ଖାଇବା, ଦିଗ ଦିଗ ବୁଲିବା, ବିଶ୍ୱକୁ ଏକାନ୍ୱିତ କରିବା ସୂକ୍ଷ୍ମ ଚେତନାର ପକ୍ଷ ସମର୍ଥନ କରେ । ଧାନ ବୁଣା କୃଷିର ଅଭାବ ମେଣ୍ଟାଇବା ପାଇଁ ମାନବିକ ପ୍ରକ୍ରିୟାକୁ ଉଦ୍ଦୀପିତ କରିବାର ନମୁନା । ଆମ ଭାରତର ସୁନା କାହାଣୀ, କୀରତି ବାଣୀ, ଯୁଗେ ଯୁଗେ ଭାରତବାସୀଙ୍କ ତ୍ୟାଗପୂତ ଜୀବନ ସଂଗ୍ରାମକୁ ଛନ୍ଦୋବଦ୍ଧ କରିଛି । ତାଙ୍କ ସଂପାଦନାରେ ପ୍ରକାଶିତ ଶିଶୁ ଓ କିଶୋରଙ୍କ ପାଇଁ ପାଠ୍ୟପୁସ୍ତକ ବହୁଦିନ ଯାଏଁ ଶ୍ରେଣୀରେ ପ୍ରଚଳିତ ଥିଲା ।

# କ୍ଷୁଦ୍ରଗଳ୍ପ

"So work the honest-bees,
creatures that by a rule in nature teach.
The act of order to a peopled kingdom":

**Shakespeare.**

'ଜୀବନର ଛୋଟ କଥା, ଛୋଟ ଛୋଟ ଅଭିଜ୍ଞତା' କେବେ କ୍ଷୁଦ୍ର ଗଳ୍ପ ହୋଇଯାଏ; କହିଥିଲେ ରବୀନ୍ଦ୍ରନାଥ । କବିର ଅନୁଭବ, କଥାକାରର ଅନୁଭବ ଏକ ନ ହେଲେ ମଧ୍ୟ ଜଣେ ବ୍ୟକ୍ତି ଏକାଧାରରେ ସୁଗାଳ୍ପିକ ହେବା, ସୁକବି ହେବାର ଦୃଷ୍ଟାନ୍ତ ବିରଳ ନୁହେଁ । ମନର ସ୍ୱତନ୍ତ୍ର ପ୍ରସ୍ତୁତି ଆବଶ୍ୟକ ହୁଏ ଠିକ୍ ଠିକ୍ ଶବ୍ଦରେ କାହାଣୀଟିଏ ଲେଖିବା ପାଇଁ । କବିତାର ପରିବେଶ ଟିକିଏ ଭିନ୍ନ ପ୍ରକାର । କଥିତ ଶୈଳୀରେ ଭାଷା ସଂଯୋଜନା କରି ପାତ୍ରପାତ୍ରୀଙ୍କ ଆବେଗ, ଧୀଶାଳତା, ପରିସ୍ଥିତିର ପରିବର୍ତ୍ତନଶୀଳ ଧାରଣ ଓ ଘଟଣାର ଆବଶ୍ୟକ ଦିଗକୁ ସ୍ପଷ୍ଟ କରିବା ଗାଳ୍ପିକର ଦାୟିତ୍ୱ । ଅନନ୍ତଙ୍କ ବାକ୍‌ରୀତିରେ ଗ୍ରାମୀଣ ଶବ୍ଦର ଆବେଦନ ପାଠକପାଠିକାଙ୍କୁ ଉତ୍ସାହିତ କରେ ସ୍ୱାଧୀନତାର ପୂର୍ବ / ପର ପିଢିର ସୁଖଦୁଃଖ ସଂପର୍କରେ ଅବହିତ ହେବା ପାଇଁ । ସେ କହନ୍ତ ମାଟି ପୃଥିବୀର କାହାଣୀଟିଏ । କେବେ ଇତିହାସର ପଟଭୂମିରେ ସାମାଜିକ ସମସ୍ୟା ପାଇଁ ମନରେ ସଂବେଦନା ସୃଷ୍ଟି କରନ୍ତି । ପାଠକପାଠିକାଙ୍କୁ, ବନ୍ଧୁ ଓ ପଥ ପ୍ରଦର୍ଶକ ପରି, ଚରିତ୍ର ସବୁର ମନସ୍ତତ୍ତ୍ୱ ଭେଦ କରିବା ପାଇଁ ସଂକେତ ଦିଅନ୍ତି । ଜୀବନରେ ଜଟିଳତା ବୁଝାମଣାର ଅପେକ୍ଷା ରଖେ କହି ନୀରବ ରହନ୍ତି । ସଚ୍ଚି ରାଉତରାୟଙ୍କ

ଗଳ୍ପଗୁଚ୍ଛ ସତ୍ୟର କଳାତ୍ମକ ଉପସ୍ଥାପନା ଉପରେ ପ୍ରାଧାନ୍ୟ ଦେଉଥିବା ବେଳେ, ମୂଲ୍ୟବୋଧ ଅନ୍ୱେଷାକୁ ଅବଗୁଣ୍ଠିତ ରଖୁଥିବା ବେଳେ ଅନନ୍ତ ପଟ୍ଟନାୟକଙ୍କ ମନଛୁଆଁ ଶୈଳୀ ଘଟଣା ପ୍ରବାହର ସବିଶେଷ ବର୍ଣ୍ଣନା ଦେଉଥାଏ, ବକ୍ତବ୍ୟର ବାର୍ତ୍ତା ସଂପର୍କରେ ପାଠକପାଠିକାଙ୍କୁ ଅବହିତ କରେ ପ୍ରତ୍ୟକ୍ଷ ଭାବେ ।

'ମର୍ଡ଼ରର' କାହାଣୀଟି ମହାନଗରୀର ପୃଷ୍ଠପଟରେ ରଚିତ ଜମି ଉଠୁଥିବା ଲୋକଭିଡ଼ ଭିତରେ ଅପରାଧୀ ନିଖୋଜ ହେବାର ଅନୁଭବ ଧକ୍କା ଦେଉଛି ମନ ତଳେ । ମନୋବୃତ୍ତିର ପଟ୍ଟ ପରିବର୍ତ୍ତନ ଅନେକ ସମୟରେ ଦକା ଦେଉଛି । "To be or not to be"ର ପ୍ରଶ୍ନବାଚୀ ପ୍ରତି ଆମର ଦୃଷ୍ଟି ଆକର୍ଷଣ କରୁଛି ।

ଅଜିତ୍‌ର ପ୍ରଶ୍ନବାଚୀରୁ କାହାଣୀ ଆରମ୍ଭ ହୋଇଛି...

''ଓଃ, ଦିଶୁନାହିଁ ନା କ'ଣ ? – ବିରକ୍ତି ଆଉ କାତରତାରେ କେମିତି କହି ପକାଇ ହଠାତ୍ ତରଳି ଯାଇ ଛିଡ଼ା ହୋଇଗଲା ଅଜିତ୍ । ଛିଡ଼ା ହୋଇଗଲା ମୁହୂର୍ତ୍ତକ ପାଇଁ, ତା' ପରେ ଧାଇଁଲା, ଧାଇଁଥିଲା ଯେମିତି ଅଣନିଃଶ୍ୱାସୀ ହୋଇ ଦେହ ମୁହଁର ନିବିଡ଼ ଜଙ୍ଗଲ ଭିତରେ ।''

ଅଜିତ୍ କଲିକତାର ଜନ କଲ୍ଲୋଳିନୀ ରୂପ ରାସ୍ତାରେ ଦେଖୁଥିବା ବେଳେ କଥାକାର ବ୍ୟଙ୍ଗ କରିଛନ୍ତି । ସାହାଯ୍ୟ ପାଇଁ ଲୋକଟିଏ ଚିତ୍କାର କରୁଥିବା ନିର୍ଲିପ୍ତ ଅନୁଭବ 'ବାବୁ'ର ଅବକ୍ଷୟାତ୍ମକ ଆବେଦନ ସୃଷ୍ଟି କରିଛି ଚେତନାରେ । ସୌଜନ୍ୟ ଆଡ଼କୁ ମୁଣ୍ଡ ଝୁକେଇବା ଆଉ ମାମୁଲି କଥାରେ ନିଜକୁ ଛନ୍ଦିବାର ଦୋଳିରେ ଆଧୁନିକ ମଣିଷର ଅବସ୍ଥା କର୍ମ ସାଧନର ଲକ୍ଷ୍ୟବିନ୍ଦୁ ଛୁଇଁ ପାରୁନାହିଁ । ଘନ ଜନାକୀର୍ଣ୍ଣ ମହାନଗରୀରେ ଅଜିତ୍ ନିଜର ଅସ୍ତିତ୍ୱକୁ ଅଦୃଶ୍ୟ ଆଙ୍ଗୁଠି ଡୋରରେ ନାଚୁଥିବା ଖେଳନାଟି ସହିତ ସମାନ୍ତାନ କରିଛି । ଜନସ୍ରୋତରୁ ସେ ବାରି ପାରିଛି ରୋବଟ୍ ଭଳି ଅସୁରଟିଏ ତା' ଆଡ଼କୁ ମାଡ଼ି ଆସୁଛି ।

ମହାନଗରୀରେ ଅଜିତ୍ ନଟବରକୁ ଭେଟିବା ଅବସରରେ ଦେଖିଛି ପୂର୍ଣ୍ଣତା ପାଇବାକୁ ଥିବା ଦୁଇଟି ଲାର୍ଭାର ନକ୍ସା ଆଙ୍କୁଥିବା ତା'ର ଭ୍ରୂଲତା ତଳେ ଦୁଇଟି ଉଚ୍ଚ ଶକ୍ତିସଂପନ୍ନ ବିଦ୍ୟୁତ୍ ବଲ୍‌ବ ପରି ଆଖିଡୋଳା ଜଳୁଛି । ନଟବର ତା' କାନ ପାଖରେ ଦୁନି ଦୁନି କହିଛି, ''ଆସନ୍ତୁ ଆଜ୍ଞା ମୁଁ ପରା ଜେଲ୍‌ର ସଙ୍ଗୀ ଆପଣଙ୍କର– 'ମେଟ୍' ନଟବର, ଯିଏ ମର୍ଡ଼ର କରିଥିଲା ବୋଲି''–

ସାବଲୀଳ ଭାଷାରେ ଗାଳ୍ପିକ ଅଜିତ୍ ଜୀବନର ଅସହଜ ପରିସ୍ଥିତି ସବୁ ବର୍ଣ୍ଣନା କରିଛନ୍ତି । ଟେକ୍‌ସି ଡ୍ରାଇଭର ସହିତ ପାନ ଦୋକାନ ଆଗରେ ଅପେକ୍ଷା, ଅପରିଚ୍ଛନ୍ନ ହୋଟେଲ

ପରିବେଶରେ ସ୍ୱତିଚାରଣ, ଆଙ୍ଗ୍ଲୋ ଇଣ୍ଡିଆନ୍ ତରୁଣୀ ପ୍ରତି ଅନୁରାଗ ଆଧୁନିକ ଜୀବନର ଅର୍ଥହୀନ ଅନ୍ୱେଷା ସଂପର୍କରେ ଧାରଣା କରିବା ପାଇଁ ସହାୟ ହୋଇଛି । ଅଜିତ୍‌କୁ ନଟବର ରାଧୁଆନନା ହୋଟେଲ୍‌ରେ ପହଞ୍ଚାଇ ଦେଇଛି । ମହାନଗରୀର ଦୁଃଖଦ ପରିସ୍ଥିତି ସଂପର୍କରେ କହିଛି:

''ଆସ୍ତେ ଆସନ୍ତୁ ବାବୁ ! ସହର ନୁହେଁ ଏ । ଯମ କାରଖାନା ବାବୁ ! ମୋ ପରି ଯିଏ ଦୁଇ ଚାରିଟାଙ୍କୁ ଧକ୍କା ମାରି ଗଡ଼ାଇ ଦେଇପାରେ ସେ ତ ଆହ୍‌ବି ଯାଉଚି ଏଠି । ବାହାରେ ଏତେ ଆଲୁଅ ଟକ୍ ଟକ୍, ଭିତରେ ଏତେ ଅନ୍ଧାର ! ବାହାର ଏତେ ସମତୁଲ, ଭିତର ଏତେ ଖାଲମୟ ! ଛୋଟ ଘରଟା । ସେ ହସ ତଳେ କାନ୍ଦ ବାବୁ ।''

ହତ୍ୟା କରିବାର ଯନ୍ତ୍ରଣାଦଗ୍ଧ ଅନୁଭୂତିକୁ କଳ୍ପନା କରି ଅଜିତ୍ ଶିହରିତ ହେଲା । ଆପାତ ଦୁନିଆର ରହସ୍ୟ ସମାଧାନ କରିବାକୁ ସେ ଆଗ୍ରହୀ ଥିବା ବେଳେ ବାସ୍ତବତାର କୁଠାରାଘାତରେ କାହିଁକି ଲୋଟି ପଡୁଛି ? ଦୁଇଟି ବିରୋଧାତ୍ମକ ଭାବନା ତାକୁ ଆକର୍ଷିତ ଓ ପରିଶେଷରେ ବିକର୍ଷିତ କରୁଥିବାରୁ ତା'ର ମନୋବୃତ୍ତି ବଦଳିଗଲା ।

ନଟବର ସହିତ ତା'ର ଯୁକ୍ତିତର୍କ ନିଜର ବିରୁଦ୍ଧାଚରଣ ଭଳି ମନେ ହେଉଥିଲା । ବିଷୟବସ୍ତୁର ଅଗ୍ରଗତିରେ ଏହା ମଝିରେ ମଝିରେ ବଦଳିବା ପରି ମଧ୍ୟ ମନେ ହେଲା । ତା'ର ବ୍ୟବହାର ପ୍ରତି ସେ ସାବଧାନ ଥିଲା । କେବେ କେବେ ତାକୁ ଭୟ କରୁଥିଲା । ହତ୍ୟାକାରୀକୁ ସେ ଘୃଣା କରେ ନାହିଁ; ହତ୍ୟାକୁ ସେ ଘୃଣା କରେ– ଏଇ ଯୁକ୍ତିର ପକ୍ଷ ସମର୍ଥନ କରୁଥିଲା ଅଜିତ୍ ସାଧାରଣ ଅବସ୍ଥାରେ ।

ହତ୍ୟାକାରୀର ମନସ୍ତତ୍ତ୍ୱ ବିଶ୍ଳେଷଣ କରି ଅଜିତ୍ ମନେ ମନେ ସହାନୁଭୂତି ପ୍ରଦର୍ଶନ କରିବାକୁ ଲାଗିଲା ନଟବରକୁ : ''କିଏ ବା ମର୍ଡ଼ର କରୁନି, ନଟଭାଇ ! କେତେ ମର୍ଡ଼ର କରି ତ ଡାକ୍ତର ବଡ଼ ଡାକ୍ତର ହୁଏ । କେତେ ହତ୍ୟା କରି ତ ଘାତକ ଯୋଦ୍ଧା ହୁଏ । କେତେ କୀଟାଣୁ କେତେ ଜୀବାଣୁ, କେତେ ଦୈତ୍ୟ, କେତେ ଦେବତାଙ୍କୁ ନିର୍ମୂଳ କରି ତ ମଣିଷ, ମଣିଷ ହୁଏ; ଜୀବନ ଧରି ରହେ । ଜୀବ ସୃଷ୍ଟିରେ କିଏ କାହାକୁ ଦେଖନ୍ତାରେ, ଅଦେଖନ୍ତାରେ ବା ହତ୍ୟା କରେ, ନଟଭାଇ । ଗୋଟିଏ ପ୍ରକାରର ହତ୍ୟାର ନାଆଁ ସିନା ମର୍ଡ଼ର ପୁଣି ଆଉ କାହା ପାଖରେ ପ୍ରାଣର ପନ୍ଥା- ଜୀବନର ଦାବୀ ତ ସେଇ । ଏଥିରୁ ରକ୍ଷା ନାଇଁ – ତା' ଛଡ଼ା...''

ଆମ୍‌ଲେଟ୍‌ରୁ ଫାଳେ ଫର୍କରେ ନେଇ ପାଟିରେ ପାକୁଳି କଲା ଅଜିତ୍, ଫିସ୍ ଫ୍ରାଏ ଖାଉଥିବା ବେଳେ ନଟବରର ମନସ୍ତତ୍ତ୍ୱ ବୁଝିବାକୁ ଚେଷ୍ଟା କଲା । ନଟ କିନ୍ତୁ ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଥିଲା ।

ହତ୍ୟା ଘଟଣା ଏଇ କାହାଣୀର ଏକ ମର୍ମନ୍ତୁଦ ଅଧ୍ୟାୟ ।' କଥାକାର ଏକ ଉଚ୍ଚକିତ ଢଳ୍ପରାତିର ବାତାବରଣ ସୃଷ୍ଟି କରିଛନ୍ତି । ପବିତ୍ର ପରିବେଶରେ ଧୂପକାଠି ଜଳୁଚି । ରାଧାକୃଷ୍ଣ ଦୋଳି ଖେଳୁଛନ୍ତି । ଭକ୍ତମାନେ ଅଧୈର୍ଯ୍ୟ ଭାବେ ମହନ୍ତ ମହାରାଜଙ୍କ ଆଗମନକୁ ଅପେକ୍ଷା କରିଛନ୍ତି । କିନ୍ତୁ ମହନ୍ତ ଆଶ୍ରମର ଗମ୍ଭୀରା ସଂଲଗ୍ନ ମଣ୍ଡପରୁ ଓହ୍ଲାଇ ନାହାନ୍ତି । ସେ ଚିଲ୍ଲେଇଛନ୍ତି ନଟବର ଆଡ଼କୁ ପାଦୁକ ବିତରଣ କରିବାକୁ, ଆରତିକାଠି ଭକ୍ତମାନଙ୍କ ଆଡ଼କୁ ବଢ଼ାଇ ଦେବାକୁ ।

ମହନ୍ତଙ୍କ ଆଦେଶ ଶୁଣି ନଟବର ମିଜାଜ ପଞ୍ଚମକୁ ଉଠିଛି । ଗୋଟିଏ ଧାରୁଆ କଟୁରିରେ ସେ ତତ୍‌କ୍ଷଣାତ୍ ମହନ୍ତୁଙ୍କୁ ଖଣ୍ଡ ଖଣ୍ଡ କରି କାଟି ପକାଇଛି । ଅନେକ ଝିଅବୋହୂଙ୍କୁ ପ୍ରଲୋଭିତ କରିବା ଓ ସେମାନଙ୍କୁ ବଳାତ୍କାର କରିବାର ଆଖ୍ୟାନ ତା' ମନରେ ଯେଉଁ ଝଡ଼ ପ୍ରବାହିତ କରିଥିଲା ମୁହୂର୍ତ୍ତମାତ୍ରକେ ତା'ର ଅବସାନ ଘଟିଛି ।

ବଳିଆର ଅଭିଯୋଗ କ୍ରମେ ନଟବର ହତ୍ୟାକାରୀ ରୂପେ ଗିରଫ ହୋଇଛି । ସେ ମହନ୍ତଙ୍କ ଅନ୍ୟାୟ ଅନାଚାର ବିରୁଦ୍ଧରେ ପ୍ରତିହିଂସା କରିଥିବା ଯୋଗୁ କାରାରୁଦ୍ଧ ହୋଇଛି । ନଟବର ସଶ୍ରମ କାରାଦଣ୍ଡ ଭୋଗୁଥିବା ବେଳେ ସେଇ ଜେଲ୍‌ରେ ଅଜିତ୍ ସହିତ ଚିହ୍ନା ହୋଇଥିବାର କଥାକାର ସୂଚନା ଦେଇଛନ୍ତି ।

ମହାନଗରୀରେ ଦୁଇ ଜଣ କାରାମୁକ୍ତ ମଣିଷଙ୍କର ପରବର୍ତ୍ତୀ ଅଧ୍ୟାୟ ବେଶ୍ ଲକ୍ଷଣୀୟ । ଅଜିତ୍ ମନରେ ପ୍ରେମିକା ପାଇଁ ଅବଶୋଷ ରହିଛି । 'ଆମାକେ ଦୁ ଦଣ୍ଡ ଶାନ୍ତି ଦିୟେଛିଲେ ନାଟୋରେର ବନଲତା ସେନ୍' ପରି ତା'ର ହୃଦୟଭରା ଶାନ୍ତିର ସ୍ମୃତିରେ ସେ ଆନ୍ଦୋଳିତ । ତଥାପି ସେ ଆବେଗ ଚାପି ରଖୁଛି । ଜୀବନର ବାସ୍ତବତା ପ୍ରତି କଟାକ୍ଷପାତ କରି ଆବଶ୍ୟକ ପନ୍ଥା ଅନୁସରଣ କରୁଛି ପଦେ ପଦେ । ଅଜିତ୍ କ୍ଷଣକ ପାଇଁ ନଟବରକୁ ସନ୍ଦେହ ଚକ୍ଷୁରେ ଦେଖିଛି । ନିଜ ଭିତରେ ସେପରି ଧାରଣାକୁ ସେ ଜୟ କରିଛି । ନଟ ବିଚରା ରାଧୁଆନନା ହୋଟେଲରେ ଆଶ୍ରୟ ନେଇଛି । ମହାନଗରୀର ଉଭାଳ ଜୀବନ ପ୍ରବାହରେ ଅଜିତ୍ ଶଙ୍କିତ ହୋଇପଡ଼ିଚି । ଅଜିତ୍‌ର ଟ୍ୟାକ୍‌ସି ରାତିର ବିଳମ୍ବିତ ପ୍ରହରରେ ଲେକ୍ ପାଖରେ ଯାଉଥିବା ବେଳେ ହୋଟେଲରେ ପରିଚାରିକା ପୁଅମା ତାଙ୍କ ଆଖିରେ ପଡ଼ିଚି । ନଟ ଚାହୁଁଛି ତାକୁ ଆପଣାର କରିବ ।...

ଅଜିତ୍‌ର ପ୍ରେମିକା ରୁକ ଯେମିତି ସ୍ମିତାର ରୂପ ଗ୍ରହଣ କରିଛି । ଆଉରି ଅନେକ ତରୁଣୀ ମିଶି ଯାଉଛନ୍ତି ତା' ସହିତ । ସ୍ମିତାକୁ ଚୁମା ଦେବାରୁ ଉତ୍ତର ମିଳିଚି : ''ମର୍ଡ଼ର୍ । ମର୍ଡ଼ର୍ କିଏ କରିବ ମର୍ଡ଼ରର୍‌କୁ ?'' କଥାକାରଙ୍କ ଭାଷାରେ, ''କହି ନ କହି, ଅଜିତ୍ ଚୁମାରେ

ଚୁମାରେ ଯେମିତି ଭିଣିଭିଣା କରିଦେଲା ସ୍ମିତାକୁ । ଯେମିତି ମର୍ଦ୍ଦନ କରି ଲାଗିଲା – ଗୁଳକୁ, ଗୁଳର ସ୍ମୃତିକୁ, ଆଃ କେତେ ପ୍ରିମ୍‌ରୋଜକୁ...''

ଟ୍ୟାକ୍‌ସି ଡ୍ରାଇଭରର ପ୍ରେମର ହତ୍ୟା ସଂପର୍କରେ ସଚେତନ । ସେ ସତର୍କ ଥିବା ବେଳେ ନଟର ଅଟ୍ଟହାସ୍ୟ ଆଧୁନିକ ଜୀବନରେ ମୂଲ୍ୟବୋଧ ସଂକଟ ସୂଚିତ କରୁଛି । ମଣିଷ ନିର୍ଦ୍ଦିଷ୍ଟ କାଳଗଣ୍ଡିରେ ବଞ୍ଚିବାକୁ ପ୍ରସ୍ତୁତ ହୋଇଛି । ସମ୍ଭାବନା ଅନୁସନ୍ଧାନ କରିବାର ସୁଯୋଗ ଖୋଜୁଚି ଦୁଷ୍କୃତି ଦୂର କରିବା ପାଇଁ ।

ଅନନ୍ତ ପଟ୍ଟନାୟକଙ୍କ 'ଫେରିଆ' ଗଳ୍ପରେ ନାୟକ ନୀଳାଦ୍ରି ମୂକ କଣ୍ଠରେ ଭାଷା ଦେଇଛି । କମ୍ପାନୀର ପ୍ରଚାର ସହକାରୀ ରୂପେ ସେ ଗ୍ରାମବାସୀମାନଙ୍କୁ ବହୁ ସଂଖ୍ୟାରେ ଆକର୍ଷଣ କରିଛି । ଗ୍ରାମୋଫୋନ୍ ସଙ୍ଗୀତର ମନମତାଣିଆ ଲହରରେ ଏକାଠି ହୋଇଥିବା ଲୋକେ ସାବୁନ୍‌ର ପ୍ରଚାର ଶୁଣିଛନ୍ତି । ନୀଳାଦ୍ରିର ସହକାରୀ ବେଣୁ ଯେତେବେଳେ ସାବୁନ ବିକ୍ରୟର ଦାୟିତ୍ୱ ନେଇଛି ନୀଳାଦ୍ରି ଚିଲିକାକୂଳିଆ ଅଞ୍ଚଳରୁ ଡାକରା ପାଇ ଗୋଟିଏ ବୁଢ଼ୀର ଗମ୍ଭୀରା ଘରେ ପାଦ ଦେଇଛି । 'ଚିହ୍ନି ପାରୁନ ? ଚିହ୍ନି ପାରୁନ ବାପ । ସେଦିନ ବାଲୁକେଶ୍ୱର ଦେଉଳକୁ ଯାଉଥାଏ ମୁଁ ବେଲପତ୍ର ନେଇ । ବୈଶାଖ ମାସ ଖରା । ତମର ଗୋରା ଦେହଟା ଝାଉଁଳି ପଡ଼ିଥାଏ । ଦେହରେ ଖଣ୍ଡେ ଖଦଡ଼ ଖଦୀ ଆଉ ଚାଦର । ନାଲିଆ ଖଦଡ଼ର ଝୁଲା ମୁଣିଟାଏ । କିଏ କେତେବେଳେ ମାଡ଼ ମାରିଥିଲା, ଗାଲରେ ଥିଲା ପାଞ୍ଚ ଆଙ୍ଗୁଳିର ଚିହ୍ନ; 'ପାଣି' ମାଗିଲ । ଚମକି ପଡ଼ିଥିଲି ମୁଁ, ଖସି ପଡ଼ିଥିଲା ବାଲୁକେଶ୍ୱରଙ୍କ ବେଲପତ୍ରଟିକ । ପରେ...''

କାଇଁଶ ପେଡ଼ିରେ ଥିବା କୋଉ କାଳର ପୁରୁଣା କାଗଜ ଟିକକ ନୀଳାଦ୍ରି ହାତକୁ ନେଇ ପଢ଼ିଲା :

''ଲୁଣ ନୁହେଁ ଏ ଯେ ରକ୍ତର ଛିଟା
ବକ୍‌ସି ରାଜଗୁରୁ ମାଉଁସ ଚିକିଟା ।''

ଜମିଦାର ଧର୍ମାନନ୍ଦ ମହାନ୍ତି 'ମେଞ୍ଚଡ଼ ଟୋକା ଗାନ୍ଧୀର ଚେଲା ପାଲଟି ଆସିଚି'' କହି ନିଆଁ ପାଣି ବନ୍ଦ କଲେ । ନୀଳାଦ୍ରିକୁ ବିଧବାଟି ବଞ୍ଚାଇଥିଲା : ''ପ୍ରଥମେ ମାଡ଼ ଖାଇ ଘୁମାଇ ପଡ଼ିଥିଲି; ଯିଏ ମୋତେ ପାଣି ଟୋପାଏ ଦେଇଥିଲା ସେଇ ଏ, ସେଇ... ଏ ବିଧବା ଯୁବତୀ ।'' x x

''ବୁଢ଼ୀର ହାତ ମୋ ସାହେବୀ ପୋଷାକ – ବକିଙ୍ଗ୍ ହାମ୍ ମିଲସ୍ ସାନଫ୍ରାଇଜଡ୍ କନା ତିଆରି ଟ୍ରାଉଜରକୁ ଛୁଇଁଲା । ଛୁଇଁଲାନି, ଛାଡ଼ିଦେଲା – ''ତୁ କ'ଣ ଭୁଲିଗଲୁ କିରେ ? ଏବେ କ'ଣ ଗାନ୍ଧୀ ରାଜ୍ୟ ହୋଇନି ? ଗାନ୍ଧୀ !''

ନୀଳାଦ୍ରି ଟିକିଏ ପରେ ତା'ର କର୍ତ୍ତବ୍ୟ କ୍ଷେତ୍ରକୁ ଫେରିଛି । ଇଂରେଜ ରାଜତ୍ୱ ସମୟରେ ସଂଗ୍ରାମ ପାଇଁ ଘାଟି ଥାପିବାକୁ ଆଗଭର ହୋଇଯିବା ଯୁବକ ସାବୁନଙ୍କୁ ଜନପ୍ରିୟ କରିପାରିଛି । ରବୀନ୍ଦ୍ରନାଥ ଠାକୁରଙ୍କ 'ଘରେ ବାଇରେ'ର କଥାବସ୍ତୁ କିଞ୍ଚିତ ପ୍ରତିଧ୍ୱନିତ କରେ । ବ୍ୟକ୍ତିତ୍ୱକୁ ସ୍ୱୀକାର କରିବା ଯଦି ଗଳ୍ପ ରଚନାର ମାପକାଠି ହୁଏ, ଏହା ତା'ର ସାର୍ଥକ ଦୃଷ୍ଟାନ୍ତ ।

'ଚଢ଼ା ଉତରା' ଅନନ୍ତ ପଟ୍ଟନାୟକଙ୍କର ଏକ ସୁପରିଚିତ ଗଳ୍ପ । ତାଙ୍କର ଏକ କାହାଣୀ ସଂକଳନର ଶୀର୍ଷକ ମଧ୍ୟ । ଏକ ଗ୍ରାମାଞ୍ଚଳ ସାମରିକ ବ୍ୟାରେକ୍‌ରେ ନାରାୟଣର ଅଭିଜ୍ଞତା ଏଇ ଗଳ୍ପର ଉପଜୀବ୍ୟ –

''ଟୂନି ହୋଇ ପଡ଼ି ରହିଥାଏ ମିଲିଟାରୀ ବ୍ୟାରାକ୍‌ସ୍‌ଟା । ଢୁଳାଉଥାଏ ଯେମିତି ଝୋଲାମରା ଉଦୁଉଦିଆ ଦି' ପହରିଆ ତାତିରେ ।

''ପହିଲି ଟଇଟାଳିଟା 'ନୟନଙ୍କୁ' ଲାଗୁଥାଏ ଟଗଲିଙ୍କ ପରି, ଯେମିତି ମନ ଉଦ୍ବେଳ ବହି ଯାଉଛି ହୁଉ ହୁଉ ହୋଇ, ନାଚି ନାଚି ଯାଉଛି ଆଖି ଆଗରେ ଝରାଇ ଦେଇ ସଡ଼କ ଆରପଟେ ବରଗଛର ପାଚିଲା ପତ୍ରଗୁଡ଼ାକୁ; ଗୁଲ୍‌ମୋହରର ଗଛରେ ଝୁଲି ଝୁଲି ଦୋହଲୁଛି ସେଇ ଟଗଲି ଗଭାଗୁଡ଼ିକ, ଯେମିତି ହଳଦୀ ଗୁରୁଗୁରୁ ଫୁଲର ପେନ୍ଥାକୁ ପେନ୍ଥା ହସରେ, କେଉଁ ଆଶାର ମଉଛାରେ ମସ୍‌ଗୁଲ୍ ହୋଇ ।''

''ବ୍ୟାରାକ୍‌ସ୍ ଭିତର ଡରମିଟରୀରେ ଖଟିଆଟା ଉପରେ ଗଡୁ ଗଡୁ ଛାଇଛାଇଆ ନିଦରେ ଅନାଇଦେଲା ନୟନ । ଗାଆଁର କେତେ ଉଦଣ୍ଡୀଙ୍କ ଗୋଡ଼ତଳେ ଗଳି ଗଳି ଯେମିତି ଧାଇଁ ଆସୁଛି ଝିଅଟାଏ । 'ସୁନି ନୁହେଁ ତ !'' କଥାକାର ଇମ୍ପ୍ରେସନିସ୍‌ଟିକ୍ ଶୈଳୀରେ ସମୀପବର୍ତ୍ତୀ ଜଙ୍ଗଲରେ ସୁନିର ଉପସ୍ଥିତି ଜଣାଇଛନ୍ତି । ଚୌବେ, ମଦନ, ଫକୀର ମିଆଁ ସେ ଭଲ ପାଇବାର ଏକ ଲିରିକ୍ ଗାଉଥିବା ବେଳେ ମଝିରେ ମଝିରେ କଥା ହେଉଛନ୍ତି । ପରିବାର ପ୍ରତିପୋଷଣ ପାଇଁ ସେ ସମ୍ମୁଖୀନ ହେଉଥିବା ଅଭାବ ଅସୁବିଧାଗୁଡ଼ିକ ଭାବି ବସିବାରୁ ସୁନିର ଆଖି ଯୋଡ଼ାକ ଭାସି ଉଠିଛି, ବୋଉ ପାଇଁ ଖଦୀ କିଣିଦେବାକୁ ସ୍ତ୍ରୀର ଅନୁରୋଧ ନୟନଙ୍କୁ ଅଥୟ କରିଛି । ଆବେଗ ମାତ୍ରାଧିକ ହେବାରୁ ହାତମୁଠା ହୁଗୁଳା ହୋଇଛି । ବନ୍ଧୁକ ମାଟିରେ ପଡ଼ି ଯାଇଛି । ବ୍ୟାରାକ୍‌ରୁ ଆଠ ମାଇଲ୍ ଦୂରରେ ଥିବା ଗାଆଁ ଘରକୁ ଯାଇ ସୁନିକୁ ଦେଖି ଆସିବା ପାଇଁ ନୟନ ସମୟ ସ୍ଥିର କରିଛି । ସହସା ଗାନ୍ଧୀବାଦୀ ସତ୍ୟାଗ୍ରହୀଙ୍କ ଉପରେ ଗୁଳି ଚାଳନା କରିବାକୁ ପଡ଼ିଛି । ସର୍ଜେଣ୍ଟ ପ୍ରଚଣ୍ଡ ମଦ୍ୟପାନ କରିଥିବାରୁ ଲୋକମାନଙ୍କୁ ତାଙ୍କ ପାଦ ତଳେ ଶରଣ ନେବାକୁ ନିର୍ଦ୍ଦେଶ ଦିଆଯାଇଛି । ଏଇ ଅବସରରେ ବଳାତ୍କାର ଓ

ଲୁଟ୍‌ତରାଜ ଆରମ୍ଭ ହୋଇଛି । ନିଜ ଲୋକମାନଙ୍କ ପାଇଁ ମଦନ ମନର ଅଥୟ ଭାବ ଲେଖକ ହୃଦୟସ୍ପର୍ଶୀ ଭାଷାରେ ବର୍ଣ୍ଣନା କରିଛନ୍ତି ।

''ନୟନ ଚାହିଁଥିଲା, ବତୀଖୁଣ୍ଟ ପରି । ବ୍ୟାରାକ୍‌ସର ବିଦ୍ୟୁତ୍ ଚମକରେ ନିଶ୍ଚଳ ହୋଇ ଯାଇଥିଲା ଯେମିତି । ଏରୁଣ୍ଡି ଡେଇଁ ପାଦେ ଆଗେଇଥିବ କି ନାହିଁ, ମଦନ ଡାକିଲା – ''ଶୁଣ୍ ! ନେଇ ଯା !'' ଖାଲି ଖାଲି ଯାଆନ୍ତି ନା କାହା ଘରକୁ, ଖାଲି ହାତରେ ଦେଖନ୍ତି ନା ଛୁଆ ପିଲାଙ୍କୁ ?'' କରାଟରୁ ଟଙ୍କାଟିଏ କାଢ଼ି ବଢ଼େଇ ଦେଲା – ''ନେ, ଝିଅଟିକୁ ଦେବୁ । ଆଉ, ଠିକ୍ କରି ଆସିବୁ ଯିବାକୁ ହେବ କେତେବେଳେ – ଯିବି, ଯିବି ମୁଁ ଏଥର ।''

''ତୁ । ତୁ ଯିବୁ ନୟନ, ତୁ ?'' ହୋ ହୋ ହୋଇ ହସି ଉଠିଲା ମଦନ । ବିଶ୍ୱାସ କରି ପାରିଲା ନାହିଁ ଆଦୌ । – ''ନା, ନା, ତତେ ନେଇ ପାରିବି ନାହିଁ ସେ ବାଟକୁ ! ତୁ ତ ଆଉ ମୋ ପରି ମାଇପି ରଙ୍କୁଣା, ଆଇଁଷିଆ ନୋହୁଁ, କଂସେଇ ନୋହୁଁ ?'' ଟଙ୍କାଟିକୁ ନେଡ଼ିରେ ନଚାଇ ନଚାଇ ଫିଙ୍ଗିଦେଲା ଖଟିଆ ଉପରକୁ – ''ନା, ଥାଉ, ଏ ଆଉ କୋଉ ମୌକା ପାଇଁ । ଯିବୁ ଯଦି ! ଯିବୁ ନାହିଁ କାହିଁକି ? ଶାସନ କାମରେ ଅଛେଁ ଆମେ, ଏଥିରେ ସବୁ ତାଲିମ୍ ହେବା ତ ଦରକାର । ଆ ବନ୍ଧୁକଟା ଧର ! ବିନା ପଇସାରେ ତ କାମ ଫତେ ହେବ ଏଠି ।''

ସେମାନେ ଦଳିମକଚି ଦେଇଥିବା ଅନେକ ଗାଆଁ ଭିତରୁ ଗୋଟିଏ ଥିଲା ସୁଜନପୁର । ତଥାପି ନୟନ ଜାଣିବାକୁ ଚାହିଁଲା ସେଇ ଗାଆଁର ନାମ । ଜାଣିବାକୁ ଚାହିଁଲା ଛାୟାବୃତ୍ତ ଝିଅଟିର ନାମ 'ସୁନି' ବୋଲି । ସେ ଯେମିତି ଡେଇଁ ଡେଇଁ ପଚାରୁଥିଲା – ତା' ପାଇଁ ବନ୍ଧୁକ ଖେଳଣା କିଣା ହୋଇଚି କି ନାଇଁ ?

ଢୋ ଢା' ଗୁଳି ଫାଏର ହେଲା । ମଧରାତିର ନିଝୁମ୍ ପହର ଲୋହିତ ହେଲା । ବାରନ୍ଦାରେ ବିଶ୍ରାମ କରୁଥିବା ମଦନର ଅନୁଭବ ହେଲା ସେ ମିଶି ଯାଇଛି ସୁଜନପୁର ରାସ୍ତାରେ– ସେ ନିଜେ ମାର୍ଗଟିଏ ହୋଇଯାଇଛି – ରାସ୍ତାକୁ ରାସ୍ତାରେ ଯୋଖି ଦେଇଛି । ତା' ଉପରେ ପେନ୍ଥାଏ ଗୁଲ୍‌ମୋହର ଫୁଲ ଝରିପଡୁଚି । ଫୁଲଗୁଡ଼ିକ ନାଲି ପଡ଼ିଯାଉଛି ଆଖି ପିଛୁଳକେ । ସେ ଡିଆଁ ମାରି ସେଠାରୁ ପଳାଇଯାଉଛି । ''ଏ କ'ଣ କଲୁରେ ଚଣ୍ଡାଳ !'' ନୟନ ନିଜକୁ ବିଦ୍ରୂପ କଲା । କଥାକାରଙ୍କ ବର୍ଣ୍ଣନାରେ ଲୁହ ସମ୍ଭରଣ କରିହୁଏ ନାହିଁ !

''ଛାତିରେ ଜାକି ଧରି ରକ୍ତ ସରସର ଝିଅଟିକୁ ତାରବାଡ଼ କଟିରୁ ଧଇଁସଇଁ ହୋଇ ବିକଳରେ ଆଗେଇ ଆସୁଚି ମଦନ – ଆଗେଇ ଆସୁଚି ସୁନିକୁ ନେଇ; ହଁ, ହଁ, ସୁନିକୁ ନେଇ ତା'ର !''

"ଏ ଏ ସୁନି ! ସୁନି – କେମିତି ଲାଗିଲା ବନ୍ଧୁକଟି ? ଆ ଆ – ମା ! ମନକୁ ପାଇଲା ତ, ଖାସା ଫୁଟିଲା ! ନାଇଁ ? ଦେ, ଦେ, ତାକୁ ଦେ, ମୋ ଝିଅକୁ ଦେ ମୋତେ ମଦନ ! ସର୍ଜେଣ୍ଟଟା ଦଳିଦେବ କାଳେ ! ରାକ୍ଷସଗୁଡ଼ାକ ତମେ ଚଢ଼ିଯିବ କାଳେ ତା' ଉପରେ – ଦେ ଦେ !" "ଖସ୍ ଖସ୍ ହୋଇ ଗୁଙ୍ଗାଳି ହେଲା ଶୁଖିଲା ସ୍ନେହର ପତ୍ର କେଇଟା ପବନରେ ଅନେକ ବେଳଯାଏ– !"

ନୟନ ଦାସ ହାବିଲ୍‌ଦାର୍ ରୂପେ ପ୍ରମୋଶନ ପାଇ ବ୍ୟାରାକ୍ ଛାଡ଼ି ଚାଲିଯିବାର ରକ୍ତାକ୍ତ ସକାଳ ନିଥର ଗ୍ରାମ୍ୟ ପରିବେଶରେ ବିଭୀଷିକାର ରକ୍ତଛିଟା ଲେଖିଦିଏ ଆକାଶରେ ।

'ସଂଗ୍ରାମ' କାହାଣୀରେ ଗାଳ୍ପିକ ଅନନ୍ତ ବିଜନ ପଲ୍ଲୀ ଜୀବନର ଚିତ୍ର ଦେବାକୁ ଯାଇ କୁସଂସ୍କାର ପରିହାର କରିବା ହିଁ କର୍ମସାଧନର ଧୀମାନ ମାର୍ଗ ବୋଲି କହିଛନ୍ତି ।

'ଫଲ୍‌ଗୁ ଧାରା' ଗଳ୍ପ ସଂକଳନଟି କଳେବରରେ କ୍ଷୁଦ୍ର ହେଲେ ମଧ୍ୟ କାହାଣୀଗୁଡ଼ିକ, ଗୁରଚରଣଙ୍କ ଭାଷାରେ, ଅତୀତ ଗର୍ଭରୁ ସଂଧାନ ମିଳିଥିବା 'ଗୁପ୍ତଧନ' ପରି ଆଦରଣୀୟ, ଅତୀବ ମୂଲ୍ୟବାନ ।

୧୯୩୬ ସାଲରେ 'ଫଲ୍‌ଗୁଧାରା' କାହାଣୀଟି ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ'ରେ ପ୍ରକାଶ ପାଇଥିଲା । ଏଇ କାହାଣୀରେ ଏକ ପାରିବାରିକ ସମସ୍ୟାର ବର୍ଣ୍ଣନା ଦିଆଯାଇଛି । ଲେଖକଙ୍କର ବନ୍ଧୁ ଅଜୟ ବୋଲି ସମ୍ବୋଧନ କରି ତାଙ୍କ ସହିତ ସଂଳାପ ଆରମ୍ଭ କରିଛି । ତା'ର ମାଆ ବୋହୂଟିଏ ଖୋଜିବା ପାଇଁ ତାକୁ ବାଧ କରିବାରୁ ଏହା ତା' ପାଇଁ ବିରାଟ ସମସ୍ୟା ହୋଇଛି । ତା'ର ସ୍ୱାଧୀନତା କ୍ଷୁର୍ଣ୍ଣ ହେବ ଜାଣି ସେ ନିରୁତ୍ତର ରହୁଛି । ଦ୍ୱିତୀୟତଃ ନାବାଳକ ଝିଅଟିଏ ମାତୃତ୍ୱ ପାଇଁ ଲାଳାୟିତ ହେବା ସ୍ପୃହଣୀୟ ମନେ ହେଉ ନାହିଁ । ମନରେ ଉଦ୍‌ବେଗର ଝଡ଼ ଉଠୁଛି । ସେ ଭାବୁଚି, କାନ୍ଧରେ ଯୁଆଳି ପଡ଼ିଲେ ଦୁନିଆର ଗୋଲାମ ବନିଯିବ । ସବୁବେଳେ ଘର ସଂସାରେ ଚିନ୍ତା ମନକୁ ଘାରିବ । ସିଗାରେଟ୍ ଫୁଙ୍କିବାରୁ ତା' ମୁହଁ ନାଲି ପଡ଼ିଯାଇଚି, ଆଖି ରକ୍ତାଭ ଦିଶିଚି ।

ଅଜୟ ଆଉରି ଶୁଣିଚି ବାବାଙ୍କ ମତାମତର ବିବରଣୀ । ବୋଉର ଅଭିଯୋଗ ତାଙ୍କ କାନକୁ ଆସିଲେ ମଧ୍ୟ ସେ ଚୁପ୍ ରହିଛନ୍ତି । କେବେ କ୍ରୋଧାନ୍ୱିତ ହୋଇଛନ୍ତି । ଅଜୟର ବନ୍ଧୁ ଜୀବନ ସାଥୀ ଖୋଜିବାରେ ପିତାମାତାଙ୍କର ଏପରି ହସ୍ତକ୍ଷେପକୁ ପ୍ରଶ୍ନ କରିଛି । ବାବା ଯେତେବେଳେ ତାକୁ ଅର୍ଥ ଅପବ୍ୟୟ କରୁଥିବା ଅଭିଯୋଗରେ ତାଚ୍ଛଲ୍ୟ କରିଛନ୍ତି ଅଜୟର ବନ୍ଧୁ ପ୍ରଶ୍ନ କରିଛି – ମୋତେ ସ୍ନେହ ପ୍ରଦର୍ଶନ କରୁଥିବାରୁ ଅର୍ଥ ବିନିମୟରେ ତୁମେ ଯଥେଷ୍ଟ ଆୟ କରି ନାହଁ କି ?

ସହସା ସେ ବାବାଙ୍କ ସହିତ ସଂପର୍କ ଛିନ୍ନ କରି ତାକୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଭଲ ନ ପାଇବାକୁ କହିଛି । ପରିବାର ଜୀବନର ପ୍ରେମଧାରା ଅନ୍ତଃସଲିଳା ଫଲ୍‌ଗୁ ପରି ଯେ ଝରୁଥାଏ ଏଇ ଯୁକ୍ତି ବାଢ଼ିଛନ୍ତି କଥାକାର । ତେଣୁ 'ସୁଟେବ୍‌ଲ୍ ବଏ'ର କନ୍ୟା ନିର୍ବାଚନ ଅନନୁରୂପ, ଜୀବନର ପୃଷ୍ଠପଟ ସମ୍ବନ୍ଧରେ ଅନ୍ତରଙ୍ଗ ମନ୍ତବ୍ୟ ଦେବା ପାଇଁ ଏହା ଏତେ ମନସ୍ତାତ୍ତ୍ୱିକ ଚେଷ୍ଟା ।

କାହାଣୀର ଦ୍ୱିତୀୟ ପର୍ଯ୍ୟାୟରେ ଲେଖକ ବନ୍ଧୁ ତାଙ୍କ ନିଜ ଇଚ୍ଛାରେ ସଂସାର ଗଢ଼ିବାର ପ୍ରୟାସ ସଂପର୍କରେ ଆଭାସ ଦେଇଛନ୍ତି । ପରମ୍ପରାଠାରୁ ଆପଣାର ରୁଚି ଲାଭଦାୟକ ହୁଏ କି ନାହିଁ ସେ ସନ୍ଦେହରେ ପଡ଼ିଛନ୍ତି, 'କିନ୍ତୁ'ରେ । ଫଲ୍‌ଗୁରେ ସବୁ ଭ୍ରମ ଥାଏ, ସବୁ ବାଲିରେ ପୋତି ହୋଇଥାଏ କହିବା ପିତାମାତାଙ୍କ ହୃଦୟର ଶେଷ କଥା ନୁହେଁ । ସେ ତରୁଣ ମନର ଅମାନିଆ ପ୍ରବୃତ୍ତି କେଉଁ ବୁଝାମଣା ଅପେକ୍ଷାରେ ତାହା ସ୍ପଷ୍ଟ କରି ନାହାନ୍ତି କଳାତ୍ମକ ଦୃଷ୍ଟିରୁ ।

'ଜହ୍ନରାତି' ଏକ ଭିନ୍ନ ସ୍ୱାଦର ଗଳ୍ପ । ଗ୍ରାମୀଣ ପରିବେଶରେ ଉମା ଓ ରମା କ୍ଷୀର ନୀର ପରି ମିଶିଛନ୍ତି । ଜ୍ୟୋତ୍ସ୍ନାର ସେଇ ଶୁଭ୍ର ଛାପ ହୃଦୟରୁ ସହଜରେ ଲିଭି ପାରେନା । ଉମାର ସ୍ୱାମୀ ରଘୁପତି ଜଣେ ପୁଲିସ ଇନ୍‌ସ୍‌ପେକ୍ଟର । ରମାର ସ୍ୱାମୀ ଅରବିନ୍ଦ ଜଣେ ପଦାଧିଷ୍ଠିତ ଦେଶସେବୀ । ରଘୁପତିର ଭୂମିକା ଶୋକାଭିମୁଖୀ ହୋଇ ନ ଥିବାରୁ ସେ ପରିବାର ଚଳାଇବାର ଦୁଃଖକଷ୍ଟ ସମାଧାନ କରି ପାରି ନାହାନ୍ତି । ସେ ସୀମାବଦ୍ଧ ମନେ କରିଛନ୍ତି ନିଜକୁ । ତାଙ୍କ ଇଲାକାର ଅଭାବ ଅସୁବିଧା ରାଜନୀତିଜ୍ଞ ଅରବିନ୍ଦଙ୍କ ଯାଏଁ ପହଞ୍ଚି ପାରୁନାହିଁ । ଗାଆଁ ଟାଉଟରମାନେ କଦର୍ଥ କରୁଛନ୍ତି । କାହାଣୀ ଶେଷରେ ଉମା, ରମା ବିପରୀତ ଦିଗକୁ ଅନାଇ ରହିଛନ୍ତି । ଜହ୍ନରାତିର ଛାତିରେ ଯାଉଥିବା ଟ୍ରେନ୍ ଜହ୍ନକୁ ଟିକେ ବି ଦେଖିପାରିଛନ୍ତି ।

'ଛାୟାହୀନ କାୟା' ଗଳ୍ପରେ ଗାଳ୍ପିକ ଅନନ୍ତ ଗଳ୍ପ କଥନର ସ୍ପୃହା ଜୀବନର ରୁକ୍ଷ ବାସ୍ତବତାକୁ ଅତିକ୍ରମ କରିବାର ଏକ ପନ୍ଥା ରୂପେ ନିର୍ଣ୍ଣୟ କରିଛନ୍ତି । ମଣିଷର ଅଭିଳାଷ କେମିତି ବାକି ବାକି ଯାଏ, ତା'ର ସିଦ୍ଧି ପୁନରାୟ କେଉଁ ସ୍ପୃହା ଜାଗ୍ରତ କରେ... ଏ ସବୁର ଆଧିଭୌତିକ ଅନୁଶୀଳନ କରି ସେ ମତ ଦେଇଛନ୍ତି, ସତରେ ସତୀର୍ଥ ମଣିଷ ପ୍ରତି ସମ୍ବେଦନା ଫଲ୍‌ଗୁଧାରାରୁ ହିଁ ଝରିଆସେ । କେହି ଇଚ୍ଛା କରି ଅପୂର୍ଣ୍ଣରେ ପୂର୍ଣ୍ଣତା ଆରୋପ କରିପାରେ ନାହିଁ । ଅସ୍ଥିର ମନା ହୋଇ ସୃଷ୍ଟି ସୂତ୍ରକୁ ବ୍ୟାହତ କରି ପାରେ ନାହିଁ । ତେଣୁ ମଣିଷର 'ବିଶ୍ୱଜନୀନ ସତ୍ତା'କୁ ସୂକ୍ଷ୍ମରେ 'ବୈୟକ୍ତିକ ବିଭାବ' ସହିତ ସଂପର୍କିତ କରିଛନ୍ତି । କଳା ବ୍ୟକ୍ତ ହେବ ପୂରଣ କରିବାକୁ ପୃଥିବୀର ଆବଶ୍ୟକତା ।

'ପ୍ଲାଟଫର୍ମ' କାହାଣୀରେ ଗୋଟିଏ ରେଳଷ୍ଟେସନ ପୃଷ୍ଠପଟରେ ରହିଛି । ଝଲକୁ ଥିବା ଛନ୍ଦ ଦିଗ୍‌ବଳୟରେ ପେଣ୍ଡୁଟିଏ ପରି ଭାରସାମ୍ୟ ରକ୍ଷା କରିଛି । ଶୀତୁଆ ରାତି । କେଣେ ଯାଉ ନ ଥିବା ଜଣେ ଯାତ୍ରୀ ପରି ଲେଖକ ପଦଚାରଣା କରି କାହାଣୀ ଯୋଡୁଛନ୍ତି । ବୁକିଙ୍ଗ୍ କାଉଣ୍ଟରରୁ ନିଧିର ହୋଟେଲ, ହୋଟେଲରୁ ପ୍ଲାଟଫର୍ମ । ପ୍ଲାଟଫର୍ମରୁ କୋଇଲା ଗୋଟାଳିଙ୍କ ଆଡ୍‌ଡ଼ା । ବଡ଼ ପ୍ରତୀକାତ୍ମକ ହୋଇଯାଏ ସ୍ଥାନ, କାଳ, ପାତ୍ର ମଝିରେ ମଝିରେ । ଲେଖକ ଯେମିତି ପଚାରନ୍ତି, ମୁଁ କିଏ, ଷ୍ଟେସନ ମାଷ୍ଟର କିଏ, ନିଧି ଆଉ କୋଇଲା ଗୋଟାଳି ସବୁ କେଉଁ ପରିଚୟ ବହ କରନ୍ତି ପୃଥିବୀର ? ଯାତ୍ରୀମାନେ କିଏ ? ନିରୋଳା ମନେ ହେଉଥିବା ରାତ୍ରି ପହର ଓ ଗ୍ରାମ୍ୟ ପରିବେଶର ଷ୍ଟେସନକୁ କୁଟାକାଠି ପରି ସେମାନେ କେଉଁଠୁ ଆସନ୍ତି ? ଟିକିଏ ବଢ଼ି ପାଣିରେ କାହିଁକି ଭାସି ଉଠନ୍ତି ? କେଉଁ ଅଜଣା ସ୍ଥାନରୁ ଟିକିଏ ପରେ ନା ଟିକିଏ ପୂର୍ବରୁ ସେମାନେ ଆସନ୍ତି ?

କୋଇଲା ଗୋଟାଳି ବାଳୁତଟି ଭଉଣୀକୁ ଧରି ଅପେକ୍ଷା କରେ କେଣେ ଚାଲି ଯାଇଥିବା ବୋଉକୁ । ଫେରି ଆସିଲେ ବୋଉ ଆଉରି ମନ ଦେଇ ଶ୍ରମ କରିବାକୁ ଚେତାଇ ଦିଏ । ଦିନ ଚାରିଟା ବାହାରେ କଟାଇ ଥିବାରୁ ବେଶୀ ତାଗିଦା ଦିଏ ଉପାର୍ଜନ ପାଇଁ । କୋଇଲା ଗୋଟାଳି ବାଳୁତ ଦୁର୍ବୃତ୍ତଙ୍କ ସହିତ ପ୍ରତିଯୋଗିତା କରିବାର ଅଧିକାର ସାବ୍ୟସ୍ତ କରି ବସେ । ଆଉ ଲେଖକ ଅପେକ୍ଷା କରନ୍ତି ପ୍ଲାଟ୍‌ଫର୍ମରେ ।

'ତାରକସି ଫୁଲ' କାହାଣୀ କଷି କଷି ଫୁଲ ତିଆରି କରୁଥିବା ଶଙ୍କର ଶେଷକୁ ଲାଭଖୋର ପ୍ରବୃତ୍ତିରେ ଜୀବନକୁ ବିସର୍ଜନ କରିଛି । ପ୍ରାଥମିକ ବିଦ୍ୟାଳୟ ସ୍ତରରୁ ପୋଥିରେ ଡୋର ବାନ୍ଧିଥିବା ଯୋଗୁ ସେ ଫୁଲ ଗଢ଼ିବାର ତାଲିମ୍ ନେଇଥିଲା ବାବାଙ୍କଠାରୁ । ବଣିକଟିଏ ତାକୁ ବିପୁଳ ଆୟ ଆଶାରେ ନିଯୁକ୍ତି ଦେବା ପରେ ସେ ମିଛ ପ୍ରରୋଚନାରେ ଖାଦଥିବା ଅଳଙ୍କାର ପ୍ରସ୍ତୁତ କରିବାକୁ ଲାଗିଲା । ବ୍ୟବସାୟରେ ସାଧୁତାର ସୌରଭ ନ ଥିବାରୁ ଧରାପଡ଼ି ତାକୁ ଜୀବନ ହରାଇବାକୁ ହେଲା । ପ୍ରେମଚାନ୍ଦଙ୍କ ପରି ସହଯୋଗ ସମିତିର ଉପାଦେୟତା ପ୍ରମାଣିତ କରିଛନ୍ତି ଅନନ୍ତ ନିକୃଷ୍ଟ ଧାତୁରେ ତିଆରି ତାରକସି ଫୁଲ ବ୍ୟବସାୟର ନଗ୍ନ ରୂପ ଉଦ୍‌ଘାଟିତ କରି ।

'ଯାତ୍ରା' ଗଳ୍ପରେ ଜନ୍ମାନ୍ତରବାଦର ପ୍ରଚ୍ଛନ୍ନ ଇଂଗିତ ଥିବା ପରି ମନେ ହୁଏ । ରେଳ ଯାତ୍ରା ଅବସରରେ ନୀଳ ପାଇଜାମା ପରିହିତା ଏକ ତରୁଣୀ ଲେଖକଙ୍କୁ ପାଖ ସିଟ୍‌ରେ ବସିବା ପାଇଁ ଅନୁରୋଧ କରିଛି । ଏକ ତନ୍ଦ୍ରାଚ୍ଛନ୍ନ ମୁହୂର୍ତ୍ତରେ ସାମାନ୍ୟ ଶବ୍ଦ ବାରି ଲେଖକ କୋଟ୍ ପକେଟ୍‌ରେ ହାତ ଭରିବାରୁ ସୁନା ଦୁଲ୍‌ଟିଏ ମିଳିଛି । ସେ ବିସ୍ମିତ ହୋଇ ହାତ ଛାଟିବା ବେଳେ ଯଥାଯୋଗ୍ୟ

ପ୍ରମାଣ ଦେଇ ତରୁଣୀଟି ହାତ ବଢ଼ାଇଛି କାନ ଦୁଲ୍‌ଟି ଫେରାଇ ନେବା ପାଇଁ । ଦିଲ୍ଲୀ ଗସ୍ତ କାଳରେ ତାଙ୍କୁ ନିଜ ଘରେ ଅତିଥି ହେବା ପାଇଁ ଅନୁରୋଧ କରି ଠିକଣା ଜଣାଇ ଦେଇଛି । ସମ୍ଭବତଃ ତାଙ୍କ କଥା କଳ୍ପନାରେ ! ତଥାପି ଏହା ନୂଆ ସ୍ୱାଦ, ନୂଆ ସମ୍ଭାବନାର ପରୀକ୍ଷା ।

ସାମୂହିକ ଭାବେ ବିଚାର କଲେ, ଅନନ୍ତ ପଟ୍ଟନାୟକଙ୍କ କ୍ଷୁଦ୍ରଗଳ୍ପରେ ଆମ ସମାଜର ବାସ୍ତବ ଦିଗକୁ ଗୁରୁତ୍ୱ ଦିଆଯାଇଛି । ସେ ଭଲ ପାଇବାର ବୈୟକ୍ତିକ ତତ୍ତ୍ୱ ଅପେକ୍ଷା ତ୍ରୁଟିପୂର୍ଣ୍ଣ ସମସ୍ୟା ସୁଧାରିବା ଦିଗରେ ଅଧିକ ସଚେତନ । ସେ ବୈୟକ୍ତିକ ଜୀବନର ସଂକୀର୍ଣ୍ଣ ବିଭାବକୁ ପ୍ରଶ୍ରୟ ଦେଉ ନ ଥିବାରୁ ତାଙ୍କ ଅନୁଭବ ବିଶ୍ୱଜନୀନ ଭିତ୍ତି ଉପରେ ଆଧାରିତ । ଲେଖକର ଅନ୍ୱେଷା ସାର୍ବଜନୀନ ରୂପରେଖ ନେବାରେ ଅନ୍ତର୍ଗତ ପ୍ରେରଣା ବେଶୀ କ୍ରିୟାଶୀଳ । ତାଙ୍କ କ୍ଷୁଦ୍ରଗଳ୍ପରେ ଅନ୍ୟ ସାହିତ୍ୟର ପ୍ରଭାବ କ୍ୱଚିତ୍ ବାରି ହୁଏ । ମିଥ୍‌ର ସାମାନ୍ୟ ବ୍ୟଞ୍ଜନା, ସାବଲୀଳ ଭାଷା, ସ୍ୱାଭାବିକ ଚରିତ୍ର ଉପସ୍ଥାପନା, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ବେପରୁଆ ଆଧୁନିକ ଦୃଷ୍ଟିଭଙ୍ଗୀ ପ୍ରତି କଟାକ୍ଷ, ସାମାଜିକ ଅଭିଦୃଷ୍ଟି ସଂପର୍କରେ ଅଙ୍ଗୀକାରବଦ୍ଧତା, ବ୍ୟକ୍ତି ବିଶ୍ୱର ବୃତ୍ତାୟିତ ଅର୍ନ୍ତଚିନ୍ତାର ସଂକେତ, ମାର୍ମିକ ଅଭିବ୍ୟକ୍ତିର ଅନ୍ତରଙ୍ଗତା ଓ ନିଖୁଣ ନିର୍ମାଣ ଶୈଳୀ, ସଂଖ୍ୟାରେ ସ୍ୱଳ୍ପ ହେଲେ ମଧ୍ୟ, ଅନନ୍ତ ପଟ୍ଟନାୟକଙ୍କ ଗଳ୍ପଗୁଚ୍ଛକୁ ସ୍ୱତନ୍ତ୍ର ପର୍ଯ୍ୟାୟଭୁକ୍ତ ଓ ସ୍ମରଣୀୟ କରେ । ତାଙ୍କ ଶବ୍ଦଗୁଡ଼ିକ ବ୍ୟସ୍ତ ମହୁମାଛି ପରି 'ଜନପୂର୍ଣ୍ଣ ରାଜ୍ୟ'ରେ ନିୟମବଦ୍ଧ ଜୀବନଯାପନ ପାଇଁ ସତେ ବା ଦୃଷ୍ଟାନ୍ତ !

X X X X

ମାକ୍‌ସିମ୍ ଗର୍କୀଙ୍କ 'ମା' ଉପନ୍ୟାସ, ବେଦିଲ୍‌ଙ୍କ 'କୌମୁଦୀ ଓ ମଦନ', ଏମ୍. ସୋଲୋକୋଭ୍‌ଙ୍କ 'ଭାଗ୍ୟରୁ ଖିଏ', ହୁଇଟ୍‌ମ୍ୟାନ୍‌ଙ୍କ 'ଦି ଲିଭିସ୍ ଅଫ୍ ଗ୍ରାସ୍', ଶୂଦ୍ରକଙ୍କ 'ମୃଚ୍ଛକଟିକ' ନାଟକ, ପିଲାଙ୍କ ପାଇଁ 'ଛବିଟିକି ଗପଟିଏ', 'ଲାଲ୍ ଟୁକୁ ଟୁକୁ ସୂର୍ଯ୍ୟଟିଏ' ପ୍ରଭୃତି ତାଙ୍କର ବହୁ ପ୍ରସାରିତ ଅନୁବାଦ କୃତି । ତାଙ୍କର ସାରସ୍ୱତ ଅବଦାନ ପାଇଁ ସେ ରାଜ୍ୟ ସାହିତ୍ୟ ଏକାଡେମୀ ଓ କେନ୍ଦ୍ର ସାହିତ୍ୟ ଏକାଡେମୀରେ ସମ୍ମାନିତ ।

•••

# ଅନନ୍ତ ପଟ୍ଟନାୟକଙ୍କର ସଂକ୍ଷିପ୍ତ ଜୀବନାଲେଖ

| | |
|---|---|
| ଜୁନ୍ ୧୧, ୧୯୧୨ | ମାତା ମହାଦେଈ ଦେବୀ ଓ ପିତା ଚଉଧୁରୀ ଜୟକୃଷ୍ଣ ପଟ୍ଟନାୟକଙ୍କ ଔରସରେ ପୁରୀ ଜିଲ୍ଲାର କଣାହାଟ ଗ୍ରାମରେ ଜନ୍ମ । |
| ଅକ୍ଟୋବର ୩୧, ୧୯୧୭ | ସାନ ଭାଇ ଗୁରୁଚରଣଙ୍କର ଜନ୍ମ । |
| ଚୈତ୍ର କୃଷ୍ଣ ଦଶମୀ, ୧୯୧୮ | ଏହି ତିଥିରେ ପ୍ରଥମ ମାତା ମହାଦେଈ ଓ ଠିକ୍ ପରେ ପରେ ପିତା ଜୟକୃଷ୍ଣଙ୍କର ମହାପ୍ରୟାଣ । |
| ୧୯୧୯ | ପୁରୀଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଅଧିବେଶନରେ ଯୋଗ ଦେଇଥିବା ନେତାମାନଙ୍କର ଅଭିଭାଷଣରେ ପ୍ରଭାବିତ ଅନନ୍ତଙ୍କର କିଶୋର-ମାନସ । ପୁରୀ ଗୁରୁ ଟ୍ରେନିଂ ସ୍କୁଲ ଓ ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ । |
| ୧୯୨୧ | ମହାତ୍ମାଗାନ୍ଧୀଙ୍କର ଆହ୍ୱାନରେ ସଂଗଠିତ ଅସହଯୋଗ ଆନ୍ଦୋଳନରେ ଅନୁପ୍ରାଣିତ ହୋଇ ଖଦଡ଼ ବସ୍ତ୍ରକୁ ନିଜର ପରିଧେୟ ରୂପେ ଆଜୀବନ ଗ୍ରହଣ । |
| ୧୯୨୧ ରୁ ୧୯୨୭ | ଦିବଂଗତ ଦିବ୍ୟସିଂହ ପାଣିଗ୍ରାହୀ, ଜଗବନ୍ଧୁ ସିଂହ ପ୍ରମୁଖଙ୍କର ସଂସ୍ପର୍ଶ ଲାଭ । ଜାତୀୟ ଗୌରବ ମଧୁସୂଦନ, ଉତ୍କଳମଣି |

| | |
|---|---|
| | ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଓ ଆଚାର୍ଯ୍ୟ ହରିହରିଙ୍କର ଜୀବନାଦର୍ଶ ଓ ଦେଶପ୍ରୀତିରେ ପ୍ରଭାବିତ । |
| ୧୯୨୮-୨୯ | ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଅଧ୍ୟୟନ । |
| | ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଛାତ୍ରମାନଙ୍କ ଯୋଗଦାନ ସଂପର୍କରେ ତାଙ୍କର ଦୃଢ଼ମତ ପ୍ରକାଶ, ନବମ ଶ୍ରେଣୀରେ ପଢୁଥିଲା ବେଳେ 'ସହକାର' ପତ୍ରିକାରେ ପ୍ରଥମ କବିତା ପ୍ରକାଶ । |
| | ଦଶମ ଶ୍ରେଣୀରେ ପଢୁଥିଲା ବେଳେ କଲିଜିଏଟ୍ ସ୍କୁଲର ମୁଖପତ୍ର 'ଛାତ୍ରବଂଧୁ'ର ପ୍ରଥମ ଛାତ୍ର ସଂପାଦକ । |
| ୧୯୩୦ | ମାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ । |
| | 'ଲବଣ ସତ୍ୟାଗ୍ରହ'ରେ ଅଂଶଗ୍ରହଣ, କାରାବରଣ । |
| | ଦେଶାତ୍ମବୋଧକ କବିତା ରଚନା । |
| ୧୯୩୧ | ନିଜ ଗାଁ ଚଣାହାଟରେ ଆୟୋଜିତ ଏକ ସମ୍ମିଳନୀରେ ସ୍ୱାଧୀନତା ସଂଗ୍ରାମୀ ରମାଦେବୀ, ସରଳା ଦେବୀ, ନବକୃଷ୍ଣ ଚୌଧୁରୀ, ଭାଗୀରଥି ମହାପାତ୍ର ଓ ରାଜକୃଷ୍ଣ ବୋଷ ପ୍ରମୁଖଙ୍କ ସହିତ ଅଂଶଗ୍ରହଣ । |
| | ରେଭେନ୍‌ସା କଲେଜରେ ଅଧ୍ୟୟନ । |
| | 'ପ୍ରାଚୀ ସମିତି', ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓ ବ୍ରଜସୁନ୍ଦର ଦାସଙ୍କ ମାଧ୍ୟମରେ ସାହିତ୍ୟ ଚର୍ଚ୍ଚାରେ ଅଭିନିବେଶ । |
| | ବୈଦନାଥ ରଥ ବିଶ୍ୱନାଥ ପଶାଏତ୍ ଗୋକୁଳ ମୋହନ ରାୟ ଚୂଡ଼ାମଣି, ରବି ଘୋଷ ଓ ଗଂଗାଧର ମିଶ୍ର ପ୍ରମୁଖ ସମଧର୍ମୀ ବଂଧୁମାନଙ୍କ ସହିତ ସଂଗଠନ ଆରମ୍ଭ ସଶସ୍ତ୍ର ବିପ୍ଳବ ପାଇଁ ତତ୍ପରତା ପ୍ରକାଶ । |

| | |
|---|---|
| ୧୯୩୧-୩୨ | 'ସ୍ୱତନ୍ତ୍ର ପ୍ରଦେଶ ଛାତ୍ର ସଂଘ'ର ସହ-ସଂପାଦକ ଥାଇ ସୀମା ନିର୍ଦ୍ଧାରଣ କମିଟି ନିକଟରେ ସଂଘ ପକ୍ଷରୁ ଦାବି ଉପସ୍ଥାପନ । |
| ୧୯୩୨ | ଦିଲ୍ଲୀଠାରେ ଅନୁଷ୍ଠିତ ଜାତୀୟ କଂଗ୍ରେସ ଅଧିବେଶନରେ ଯୋଗ ଦେବା ପାଇଁ ଟ୍ରେନ୍‌ରେ ଗଲାବେଳେ ଇଂରେଜ ପୁଲିସ୍‌ଙ୍କ ଦ୍ୱାରା ବନ୍ଦୀ ହୋଇ କଲିକତାର ଆଲିପୁର ଜେଲ୍ ସେଣ୍ଟ୍ରାଲ ଜେଲ୍‌ରେ କାରାବାସ ଓ ତଦ୍ୱାରା କଲେଜରୁ ବିତାଡ଼ିତ । କିନ୍ତୁ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କର ହସ୍ତକ୍ଷେପ ଦ୍ୱାରା ଡିଉକ୍ ସାହେବଙ୍କ ଅନୁମତି କ୍ରମେ ରେଭେନ୍‌ସା କଲେଜରେ ପୁଣି ଶିକ୍ଷା ଲାଭ । |
| ୧୯୩୪ | ସମାଜବାଦୀ ଚେତନାର ବାର୍ତ୍ତାବହ 'ନବଯୁଗ ମଣ୍ଡଳ' ଗଠନ କରି ସମାଜସେବୀ ଓ ବୁଦ୍ଧିଜୀବୀଙ୍କ ସହ ବିଭିନ୍ନ ଆସରରେ ତଥା ପାଠଚକ୍ରରେ ସକ୍ରିୟ ଅଂଶଗ୍ରହଣ, ମେ'ମାସ ପହିଲା ତାରିଖରୁ 'ନବଯୁଗ ମଣ୍ଡଳ'ର ମୁଖପାତ୍ର 'ସାରଥୀ'ର ଆତ୍ମପ୍ରକାଶ । ଏଥିରେ ବହୁ କବିତା ଛଦ୍ମନାମରେ ପ୍ରକାଶିତ ।<br>ବିଭିନ୍ନ ପତ୍ରିକା ତଥା 'ନବଭାରତ'ରେ ନିୟମିତ ଭାବେ କବିତା ପ୍ରକାଶିତ । |
| ୧୯୩୫ | 'ନବଯୁଗ ସାହିତ୍ୟ ସଂସଦ' ଗଠନ । ଏହାର ପ୍ରଥମ ଅଧିବେଶନ ନଭେମ୍ବର ୨୯ ତାରିଖରେ କଟକର ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ । ସେ ଏହି ସଂସଦର ପ୍ରଥମ ସଂପାଦକ ଥିଲେ । |
| ୧୯୩୬ | 'ନବଯୁଗ ସାହିତ୍ୟ ସଂସଦ'ର ମୁଖପତ୍ର 'ଆଧୁନିକ' ପ୍ରକାଶିତ । 'ନିଖିଳ ଭାରତ ପ୍ରଗତି ସଂଘ'ରେ 'ନବଯୁଗ ସାହିତ୍ୟ ସଂସଦ' ମିଶି ଯାଇ 'ଓଡ଼ିଶା ପ୍ରଗତି ଲେଖକ ସଂଘ' ନାମରେ ନାମିତ । |

| | |
|---|---|
| | କମ୍ୟୁନିଷ୍ଟ ପାର୍ଟିରେ ସଦସ୍ୟ ରୂପେ ଯୋଗଦାନ । ପରେ ପରେ ସମଧର୍ମୀ ସଦସ୍ୟମାନଙ୍କର ସାହଚର୍ଯ୍ୟରେ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟି ଗଠନ କଲେ । |
| ୧୯୩୭ | ଗୁରୁଜଂଗ (ଖୋର୍ଦ୍ଧା)ଠାରେ ଯୁବ ସମ୍ମିଳନୀର ପ୍ରଥମ ଅଧିବେଶନ । |
| ୧୯୩୭-୩୮ | ଗଡ଼ଜାତ ଆନ୍ଦୋଳନ ସମୟରେ ସହିଦ ବାଜିରାଉତ ଓ ଅନ୍ୟ ୫ ଜଣ ପ୍ରଜାମଣ୍ଡଳ କର୍ମୀମାନଙ୍କୁ ଛଅଟି ଶଗଡ଼ରେ କଟକ ରେଲଷ୍ଟେସନ୍‌ରୁ ଶଗଡ଼ରେ ଖାନ୍‌ନଗର ଆଣିଲା ବେଳେ ଅନନ୍ତ ନିଜେ ଜଣେ ଶଗଡ଼ିଆ ଥିଲେ । 'ରଣଭେରୀ' ପତ୍ରିକା କଟକରୁ ପ୍ରକାଶ । |
| | ଢେଙ୍କାନାଳ କୋଲୋଣ୍ଡା ଶିବିରରୁ ସାଇକେଲ୍‌ରେ ଜେନାପୁର ଆସିବା ବାଟରେ କବାଟବନ୍ଧଠାରେ ବ୍ରିଟିଶ୍ ସରକାରଙ୍କ ହାତରେ ଧରାପଡ଼ି ୬ ମାସ ବିଚାରାଧୀନ ବନ୍ଦୀ, ଦୁଇବର୍ଷ ସଶ୍ରମ ଓ ଏକମାସ ଅଶ୍ରମ କାରାଦଣ୍ଡ ଭୋଗ । ୩ ମାସ କାମାକ୍ଷାନଗର ଜେଲ୍‌ରେ ଓ ଅବଶିଷ୍ଟ ଢେଙ୍କାନାଳ ଜେଲରେ ବନ୍ଦୀ ଜୀବନ ଯାପନ କରିଥିଲେ । |
| ୧୯୩୯ | କବି ସଚ୍ଚିରାଉତରାୟଙ୍କ କବିତା ସହିତ ଯୌଥ କବିତା 'ରକ୍ତଶିଖା' ପ୍ରକାଶିତ । |
| ୧୯୪୦-୪୧ | 'ଯୁଦ୍ଧ ବିରୁଦ୍ଧରେ ଯୁଦ୍ଧ', 'ସର୍ବହରା ପଥ', 'ପ୍ରଗନ୍‌ସ ପ୍ରତି ବିଶ୍ୱାସଘାତକତା' ଇତ୍ୟାଦି ଲେଖା ପାଇଁ ୩ ଡ଼ିସେମ୍ବର ୧୯୪୦ରୁ ୯ ମାସ ସଶ୍ରମ ୪ ମାସ ଅଶ୍ରମ କାରାଦଣ୍ଡ ଭୋଗ କଟକ ଓ ଅନୁଗୁଳ ଜେଲରେ । |
| | ୧୯୩୦-୪୦ ମଧ୍ୟରେ ତାଙ୍କର ଅଧିକାଂଶ ରଚନା ଅତନୁ, ଅଣାକାର, ବୋଧିସତ୍ତ୍ୱ, କୁମାରୀ ଯଶୋଧାରା, ଆଦି ଛଦ୍ମ ନାମରେ ପ୍ରକାଶିତ । |

| | |
|---|---|
| ୧୯୪୨ | 'ଉଠ ଜାଗ ଭୋକି ବଂଦୀ' କବିତା ସଂକଳନ । ଏହି ସଂକଳନଟି କବି ସଚ୍ଚିରାଉତରାୟ, ଗଣକବି ବୈଷ୍ଣବ ପାଣି ଓ ଅନନ୍ତଙ୍କର କବିତାରେ ସମୃଦ୍ଧ । |
| | କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର । 'ମୁକ୍ତିଯୁଦ୍ଧ'ର ସଂପାଦକ । |
| ୧୯୪୩ | ଓଡ଼ିଶାରେ ଘଟିଥିବା ଭୟଙ୍କର ଦୁର୍ଭିକ୍ଷ ସମୟରେ ବାଲେଶ୍ୱର ଜିଲ୍ଲାରେ ସାହାଯ୍ୟ ବଣ୍ଟନ ଦାୟିତ୍ୱ ଗ୍ରହଣ । |
| | ଭଗବତୀ ପାଣିଗ୍ରାହୀ ବିୟୋଗ ଜନିତ ଦୁଃଖରେ ମର୍ମାହତ । |
| | 'ଓଡ଼ିଶା ଟାଇମସ୍' ଓ 'ଅବଜରଭର' ପତ୍ରିକା ସଂପାଦକ ସହିତ ସଂଶ୍ଲିଷ୍ଟ । |
| | ଏହି ସମୟ ଭିତରେ ରାବଣ ନାଟକ ରଚିତ । |
| ୧୯୪୫ | ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ଦିବ୍ୟସିଂହ ପଟ୍ଟନାୟକ ଓ ଶ୍ରୀମତୀ ରାଧାମଣି ଦେବୀଙ୍କ ଜ୍ୟେଷ୍ଠ କନ୍ୟା (ତଥା 'ଉତ୍କଳ ମହିଳା ସମିତି'ର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟା ଓ 'ଆଲୋଡ଼ନ' ଗଳ୍ପ ସଂକଳନର ଲେଖିକା) ନୀରଦ ପ୍ରଭାଙ୍କ ସହିତ ବିବାହ । |
| ୧୯୪୫-୪୮ | ଚଣାହାଟ ହାଇସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକ ଭାବେ ଯୋଗଦାନ । 'ମୁକ୍ତି ବୀଣା'ର ସଂପାଦନା ଦାୟିତ୍ୱ ଗ୍ରହଣ ଓ ପରେ ସମାଜ ଓ ସତ୍ୟବାଦୀ ପତ୍ରିକା ସଂପାଦକ ମଣ୍ଡଳୀର କାର୍ଯ୍ୟଭାର ଗ୍ରହଣ । |
| ୧୯୪୮-୪୯ | 'ସପ୍ତ ଶଯ୍ୟା' ଚଳଚ୍ଚିତ୍ରର ସହ-ନିର୍ଦ୍ଦେଶକ । ଏହାର କାହାଣୀ, ଚିତ୍ରନାଟ୍ୟ, ସଂଳାପ ଓ ସଂଗୀତ ଲେଖକ । |
| ୧୯୪୯ | 'ତର୍ପଣ କରେ ଆଜି' ପ୍ରକାଶିତ ଓ Friend's of the Soviet Union ଓ ଗଣନାଟ୍ୟ ସଂଘର ଅନ୍ୟତମ ପ୍ରାଣ ପ୍ରତିଷ୍ଠାତା । |
| ୧୯୫୨ | ଶାନ୍ତି ଶିଖା ପ୍ରକାଶିତ । ରାଜ୍ୟ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା । |

| | |
|---|---|
| ୧୯୫୩-୫୭ | ଚଣାହାଟଠାରେ ପ୍ରଥମ ସମବାୟ ସମିତି ଗଠନ ଓ ଏହାର ପ୍ରଥମ ସଂପାଦକ ରୂପେ ଦାୟିତ୍ୱ ଗ୍ରହଣ । |
| ୧୯୫୮ | ଦିଲ୍ଲୀରେ ସର୍ବଭାରତୀୟ ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ଅନୁଷ୍ଠିତ କବି ସମ୍ମିଳନୀରେ ଯୋଗଦାନ । 'କୌମୁଦୀ' ଓ 'ମଦନ' ପ୍ରକାଶିତ । |
| | Afro Asian Writer's Conferenceରେ Soviet Unionରେ ଯୋଗଦାନ । |
| ୧୯୫୯ | 'କିଂଚିତ୍' ପ୍ରକାଶିତ । |
| | 'ଚିର ଅନ୍ଧାର ରାତି' ଓ 'ପଞ୍ଚଶୀଳ' ନାଟକ ଆଦି ରଚନା । ଭାରତ ଓ ସୋଭିଏତ୍ ସାଂସ୍କୃତିକ ସଂଘର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟ । |
| | White Manଙ୍କ ଲିଖିତ Leaves of the Grass କବିତାର ଅନୁବାଦ । |
| | ବହୁବାର 'ପ୍ରଜାତନ୍ତ୍ର ବିଷୁବ ପୁରସ୍କାର ସମ୍ମାନ'ରେ ସମ୍ମାନିତ । |
| ୧୯୬୦-୬୮ | ସଂସ୍କୃତ କବି ଶୁଦ୍ରକଙ୍କ ରଚିତ 'ମୃଚ୍ଛକଟିକ' ନାଟକର ଓଡ଼ିଆ ଅନୁବାଦ । |
| ୧୯୬୧-୬୨ | Soviet ତଥ୍ୟ ବିଭାଗରେ ନିଯୁକ୍ତି ଓ ପରେ ପରେ ପାରିବାରିକ କାରଣ ବଶତଃ କାର୍ଯ୍ୟରୁ ଅବ୍ୟାହତି । |
| ୧୯୬୨ | ସାନ ଭାଇ ଗୁରୁଚରଣ ପଟ୍ଟନାୟକଙ୍କ ଶ୍ରୀମତୀ ମାନିକାଙ୍କ ସହିତ ବିବାହ । |
| ୧୯୬୨ | 'ସତ ହେଲା ମଣିଷ ସ୍ୱପ୍ନ'ର ଅନୁବାଦ । |
| ୧୯୬୪ | 'ଅଲୋଡ଼ା ଲୋଡ଼ା' କବିତା ସଂକଳନ ପ୍ରକାଶିତ । |
| ୧୯୬୬ | 'ଛାଇର ଛିଟା' କବିତା ସଂକଳନ ପ୍ରକାଶିତ । |
| | ଗର୍କିଂକ 'ମଦର' ଉପନ୍ୟାସର ଅନୁବାଦ 'ମା' ପ୍ରକାଶିତ । |

| | |
|---|---|
| | ସୋଲୋଖର୍ Fate of a Manର ଓଡ଼ିଆ ଅନୁବାଦ 'ଭାଗ୍ୟରୁ ଖିଏ' ପ୍ରକାଶିତ । |
| ୧୯୬୭ | ଶିଶୁ ସାହିତ୍ୟ 'କୁନି କୁନି' ପ୍ରକାଶିତ । |
| | ଗଳ୍ପ ସଂକଳନ 'ଚଢ଼ା ଉତ୍ତରା' ପ୍ରକାଶିତ । |
| | ସୋଭିଏତ୍ ଦେଶ ନେହେରୁ ପୁରସ୍କାର ପ୍ରାପ୍ତି । |
| ୧୯୬୮-୭୮ | ପାଠ୍ୟପୁସ୍ତକ ପ୍ରକାଶନ କମିଟିର ସଂପାଦକ । |
| ୧୯୬୮-୭୩ | ଓଡ଼ିଶା ଶିଶୁ ସାହିତ୍ୟ ସମିତିର ସଂପାଦକ ଓ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରକାଶିତ ଶିଶୁଲେଖା ପତ୍ରିକାର ସଂପାଦକ । |
| ୧୯୭୧-୭୪ | ଉତ୍କଳ ସାହିତ୍ୟ ସମାଜର ସଭାପତି । |
| ୧୯୭୮ | ଗାନ୍ଧିଜୀଙ୍କ ଆତ୍ମଜୀବନୀର ଦ୍ୱିତୀୟ ଭାଗ 'ଶିକ୍ଷା ନବୀଶ' ଅନୁବାଦ ଓ ପ୍ରକାଶନ 'ଗୀତଟିଏ ରଚିତ ହେଲା କିପରି'ର ଅନୁବାଦ । |
| | 'ଅବାନ୍ତର' ପ୍ରକାଶିତ । |
| ୧୯୮୧ | ୧୯୮୦ ମସିହା ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ । |
| ୧୯୮୨ | Soviet Land Nehru ପୁରସ୍କାର । |
| ୧୯୮୩ | Revelation (ଇଂରାଜୀ) ଅନୁଦିତ କବିତା ସଂକଳନ ପ୍ରକାଶିତ । ପୁରସ୍କାର ବିଜେତା ରୂପେ Soviet Union ଭ୍ରମଣ । |
| ୧୯୮୪ | ଭାରତ ସୋଭିଏଟ୍ ମୈତ୍ରୀ ସଂଘ ଓ ଓଡ଼ିଶା ଶାନ୍ତି ପରିଷଦର ଅନ୍ୟତମ ସଭାପତି । |
| ୧୯୮୬ | ଉତ୍କଳ ପାଠକ ସଂସଦ, ପୁରୀ କୁମାର ଉତ୍ସବ କମିଟି ପକ୍ଷରୁ ସମ୍ମାନିତ । |
| | 'ଅରଡୁ ଗଡୁ', 'ଅଗଡ଼ ବଗଡ଼' ଓ 'ସୂତ୍ରଟିଏ ସୁ କୃତୀ' ପ୍ରକାଶିତ । |

୧୯୮୭ ସାରଳା କମିଟି ପକ୍ଷରୁ ସମ୍ମାନିତ ।

୨୫ ଜୁନ୍ ୧୯୮୭ ପ୍ରାତଃ ସମୟରେ ପରଲୋକ ପ୍ରାପ୍ତି ।

ତାଙ୍କର ଦାୟାଦଗଣ ପୁତ୍ର ଆଲୋକେଶ, ଅମରେଶ, ଅନୀମେଷ, କନ୍ୟା ମୈତ୍ରେୟୀ ଏବଂ ସାନ ଭାଇ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ଗୁରୁଚରଣ ପଟ୍ଟନାୟକ ।

ଉପରୋକ୍ତ ତଥ୍ୟାବଳୀ ଆର୍ଯ୍ୟ ପ୍ରକାଶନ ଦ୍ୱାରା ପ୍ରକାଶିତ ଅନନ୍ତ ପଟ୍ଟନାୟକ ରଚନା ସମଗ୍ର (୪ର୍ଥ ଭାଗ)ରେ ପ୍ରକାଶିତ 'ଅନନ୍ତ ଜୀବନ ବୈଚିତ୍ର୍ୟ' ଅବଲମ୍ବନରେ ସଂକଳିତ ।





# ପ୍ରହରାଜ ସତ୍ୟନାରାୟଣ ନନ୍ଦ

କବି ତଥା ପ୍ରାବନ୍ଧିକ ଭାବରେ ପ୍ରହରାଜ ସତ୍ୟନାରାୟଣ ନନ୍ଦ ବେଶ୍ ଜଣାଶୁଣା । ୧୯୪୩ ମସିହା ସେପ୍ଟେମ୍ବର ୬ ତାରିଖରେ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ରାଜନୀଳଗିରିଠାରେ ତାଙ୍କର ଜନ୍ମ । ୧୯୬୬ରେ ରେଭେନ୍ସା ମହାବିଦ୍ୟାଳୟରୁ ଇଂରାଜୀରେ ସ୍ନାତକୋତ୍ତର ଡିଗ୍ରୀ ଲାଭ କରିବା ପରେ ପ୍ରଥମେ ସହ-ସଂପାଦକ ଭାବେ କଲିକତାରୁ ପ୍ରକାଶିତ 'ଅମୃତ ବଜାର ପତ୍ରିକା'ର ସହ ସଂପାଦକ ଭାବେ ଯୋଗଦାନ । ୧୯୭୬ରୁ ଦୀର୍ଘଦିନ ଧରି ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକସଂପର୍କ ବିଭାଗରେ ସହସଂପାଦକ ଭାବେ କାର୍ଯ୍ୟ କରିବା ପରେ ୨୦୦୧ରେ ଚାକିରିରୁ ଅବସର ଗ୍ରହଣ । 'ଶବସଂଗମ ଓ ଅନ୍ୟାନ୍ୟ କବିତା', 'ନୀଳ ହଂସର ଛାୟା', 'ଅଧଃପତନର ଛନ୍ଦ', 'ନକ୍ଷତ୍ର ସଂଗମ ଓ ଅନ୍ୟାନ୍ୟ କବିତା', 'ଶ୍ରେଷ୍ଠ ପ୍ରେମ କବିତା' ପ୍ରଭୃତି କବିତା ସଂକଳନ ଓ ଅନ୍ୟାନ୍ୟ ଅନେକ ଆଲୋଚନା ଗ୍ରନ୍ଥର ରଚୟିତା ସେ । ତାଙ୍କର ଦୁଇଟି କବିତା ସଂକଳନ ଇଂରାଜୀରେ ଅନୂଦିତ ।

ସାଂପ୍ରତିକ ଠିକଣା : ମହାରାଜା କଲୋନୀ, କ୍ୱାଟର ନଂ-ଏ-୪
ୱାର୍ଡ଼ ନଂ-୧୦, ବରଗଡ଼-୭୬୮୦୨୮